ପଶୁପକ୍ଷୀଙ୍କ କାହାଣୀ

ଲେଖକ :
ଅଧ୍ୟାପକ ଡକ୍ଟର ଜଗନ୍ନାଥ ମହାନ୍ତି
ଭୁବନେଶ୍ୱର

ପ୍ରକାଶକ :
**ଶ୍ରୀ ବିଜୟ ଶଙ୍କର ପାତ୍ର**
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ,
କଟକ-୭୫୩ ୦୦୨




ନୂତନ ମୁଦ୍ରଣ : ୨୦୦୭

ଲିପିସଂଯୋଜନା ଓ ମୁଦ୍ରଣ:
ଗୁରୁପ୍ରସନ୍ନ ପ୍ରେସ୍
ଝୋଲାସାହି, କଟକ-୭୫୩ ୦୦୧

**PASHU PAKHINKA KAHANI**

*By*
**Dr. Jagannath Mahanty**

Published by
**Sri Bijoy Shankar Patra**
**ORISSA BOOK STORE**
Binode Behari
Cuttack-753 002

New Edition : **2007**

PRICE : Rs. 25/-

ISBN 81-7400-410-6

# ସୂଚୀ





# କୁକୁରର କୌଶଳ

ମସ୍ତବଡ଼ ଏକ ବଗିଚା । ଏପଟେ ଠିଆ ହୋଇ ଚାହିଁଲେ, ସେପଟକୁ ଆଖିପାଏ ନାହିଁ । ସେଇ ବଗିଚାର ଏକ କୋଣରେ ଗୁଡ଼ାଏ କାଠିକୁଟା ଆଉ ନଡ଼ାର ଗଦା । ମାଈ ହଂସଟିଏ ସେଠାରେ ସାତୋଟି ଅଣ୍ଡା ରଖିଥିଲା । ସେଗୁଡ଼ିକ ଉପରେ ବସି ସେ ଉଷୁମ କରୁଥିଲା । ବୁଲାବୁଲି କରି ନ ପାରି ତା' ମନ ଭାରି ଖରାପ । ଅଣ୍ଡାଗୁଡ଼ିକ ଉପରେ ବସିଥିବାରୁ ସେ କେତେ ଦିନୁଁ ପୋଖରୀ କୂଳ ମାଡ଼ି ନ ଥିଲା । ତେଣୁ ପାଣିରେ ପହଁରିବାକୁ ତା' ମନ ଆଟୁପାଟୁ ହେଉଥିଲା । ସାଙ୍ଗସାଥୀ-ମାନେ ସୁଖର ସାଥୀ । ସେମାନେ ବି ପାଖ ପଶୁ ନ ଥିଲେ । ହଂସ ଭାବିଲା ଏଥର ଅଣ୍ଡାଗୁଡ଼ାକ ପଥୁରିଆ ପାଲଟିଯିବାରୁ ବେଗି ଛୁଆ ସବୁ ବାହାରୁ ନାହାନ୍ତି ।

ଶେଷରେ ଅଣ୍ଡା ଫୁଟାଇଲା । ସାତୋଟି ଛୁଆ ବାହାରିଲେ । ସେମାନଙ୍କ ଭିତରୁ ଗୋଟିଏ ଅତି ସାନ । ଭାରି ଦୁର୍ବଳିଆ । ସେ ସବୁବେଳେ ସେଇ ଛୁଆଟି ଉପରେ ଭାରି ନଜର ରଖିଥାଏ । ଦିନେ ସେ ଛୁଆମାନଙ୍କୁ ଚରାବୁଲା କରାଉ କରାଉ କହିଲା–ପିଲାଏ, ଚାଲ ଆଜି ପୋଖରୀକୁ ଯିବା । ତମମାନଙ୍କୁ ଆଜି ମୁଁ ପହଁରା ଶିଖାଇଦେବି । ନ ହେଲେ ତମେ ସବୁ ମୋ ପିଛା କ'ଣ ଛାଡ଼ିବ ?

ମାଆ ହଂସ ଚାଲିଲା ଆଗେ ଆଗେ । ତାର ଛୁଆମାନେ ଚାଲିଲେ ପଛେ ପଛେ । ସେ ଅଟକି ଯାଇ ଥରେ ଥରେ ପଛକୁ ଚାହଁ

ଥାଏ । ଛୋଟ ଛୁଆଟିକୁ ଚାହୁଁଥାଏ । କାରଣ ଅନ୍ୟମାନଙ୍କ ସହିତ ସେ ଚାଲିପାରୁ ନଥାଏ । ଅନେକଥର ପଛରେ ପଡ଼ିଯାଉଥାଏ ।

ଥରେ ବୁଲିପଡ଼ି ଚାହିଁଲା ବେଳକୁ ସେ ଛୋଟ ଛୁଆଟି ନଥିଲା । କୁଆଡ଼େ ଗଲା, ସେ ବ୍ୟସ୍ତ ହୋଇ ଏଣେ ତେଣେ ଖୋଜିଲା । ଶେଷରେ ମାଆ ହଂସ ଦେଖିଲା ଛୁଆଟି ଗୋଟିଏ ଖାଲରେ ପଡ଼ି



ଯାଇଛି । ଆଉ ଉଠିପାରୁନି । ସେ ଥଣ୍ଟ ବଢ଼ାଇ ତାକୁ କାଢ଼ି ଆଣିବାକୁ ଯେତେ ଚେଷ୍ଟା କଲା, ପାରିଲା ନାହିଁ । ତା ଥଣ୍ଟଟି ଛୁଆପାଖକୁ ପାଇଲା ନାହିଁ । ଛୁଆଟି ବିଚରା ଖାଲ ଭିତରେ ପଡ଼ି ଖାଲି ଚେଁ ଚେଁ ରାବ କରୁଥାଏ । ହଂସର ବୁଦ୍ଧି ଅଣ୍ଟିଲା ନାହିଁ । ସେ ବ୍ୟସ୍ତ ହୋଇ ପଡ଼ିଲା ।

ସେଇ ବଗିଚାରେ ଗୋଟିଏ କୁକୁର ଥାଏ । ନାଁ ତାର ଭାଲୁଆ । ସେ ହଂସର ଭାରି ସାଙ୍ଗ । ସେ ତା ପାଖକୁ ଯାଇ ନିଜ ଦୁଃଖ

ଇଣାଇଲା । ଭାଲୁଆ କୁକୁର ହଂସଛୁଆ ପାଖକୁ ଆସିଲା । ତାକୁ ଖାଲରୁ ବାହାର କରି ଦେବାକୁ ଭାରି ଚେଷ୍ଟା କଲା । ତାର ଆଗ ଗୋଡ଼ ପୂରାଇଲା । ହେଲେ ସେ ଗୋଡ଼ ଜମା ପାଇଲା ନାହିଁ । କିନ୍ତୁ ସେ ତ ସହଜରେ ଛାଡ଼ିଦେବା ଜନ୍ତୁ ନୁହେଁ ! ସେ ହଂସକୁ ପଚାରିଲା—ତମ ଛୁଆଟି ପାଣିକୁ ଡରିବ ନାହିଁ ? ପହଁରି ପାରିବ ତ ?

ହଂସ କହିଲା—ହଂସପିଲା ଯେତେବେଳେ ପାଣିକୁ ଡରିବ କିଆଁ ? ଭଲ ପହଁରା ଶିଖିନାହିଁ । ହେଲେ ପହଁରି ପାରିବ ।

କୁକୁର କହିଲା—ତେବେ ଆଉ ଚିନ୍ତା କ'ଣ ? ଏବେ ତ ଛୁଆ ଖାଲରୁ ବାହାରିଲା ଜାଣ ?

ହଂସ ଛୁଆ ପଡ଼ିଥିବା ଗାଡ଼ଠାରୁ ଅଳ୍ପ ଦୂରରେ ଗୋଟିଏ କୂଅ । କୂଅ ପାଖରେ ବାଲ୍‌ଟିଟିଏ ପଡ଼ିଥିଲା । ସେଥିରେ ବି ଅଧବାଲଟିଏ ପାଣି ଥିଲା । କୁକୁର ବାଲଟିର କଡ଼ାକୁ ପାଟିରେ ଧରି ଗାଡ଼ ପାଖକୁ ନେଇ ଆସିଲା । ମୁଣ୍ଡରେ ଠେଲିଦେବାରୁ ବାଲ୍‌ଟିର ପାଣି ଖାଲ ଭିତରେ ଅଜାଡ଼ି ହୋଇ ପଡ଼ିଲା । ଖାଲରେ ପାଣି ପୂରିଯିବାରୁ ହଂସ ଛୁଆଟି ଉପରକୁ ଭାସି ଉଠିଲା । ତାର ମାଆ ତାକୁ ଥଣ୍ଟରେ ଧରି ଉପରକୁ ଉଠାଇ ଆଣିଲା ।

ଛୁଆଟି ପାଣିରେ ଓଦା ହୋଇ ଚିଁ ଚିଁ କରୁଥାଏ । କୁକୁର ତାକୁ ବଞ୍ଚାଇଥିବାରୁ ମାଆ ହଂସ ଭାରି ଖୁସି ହୋଇଗଲା । ଚାରିଆଡ଼େ ତାର କୌଶଳକୁ ପ୍ରଚାର କରିଦେଲା । ସବୁ ଜୀବଜନ୍ତୁ ତାକୁ ଧନ୍ୟ ଧନ୍ୟ କଲେ ।



# ବିଲୁଆର ବୁଦ୍ଧି

ଖୁବ୍ ଗହଳିଆ ବଣଟିଏ । ପାଖରେ ତାର କୁଞ୍ଚୁକୁଞ୍ଚୁକିଆ ପାହାଡ଼ ମୁଣ୍ଡ ଟେକିଛି । ଗୋଟିଏ ବିଲୁଆ ସେଇ ବଣରେ ମନ-ମଉଜରେ ବୁଲୁଥିଲା । ହଠାତ୍ ଦେଖିଲା ଦଳେ ଶିକାରୀ କୁକୁର ତା' ଆଡ଼କୁ ମାଡ଼ି ଆସୁଛନ୍ତି । ସେମାନେ ଯୁଆଡୁ ଆସୁଥିଲେ, ବିଲୁଆ ତାର ବିପରୀତ ଦିଗରେ ଜୀବନ ବିକଳରେ ଧାଇଁଲା ।



କେତେବାଟ ଧାଇଁବା ପରେ ସେ ଠିଆହେଲା । ପଛକୁ ଚାହିଁ ଦେଖିଲା– ଜଣେ ଲୋକ ଗୋଟିଏ ଘୋଡ଼ାରେ ଚଢ଼ି ତା ପଛରେ ଧାଇଁଛି । ସବୁରିଙ୍କୁ ପାରିହେବ । ମଣିଷ ବାପୁଡ଼ାଙ୍କୁ ପାରିହେବ ନାହିଁ । ସେଇ ବିଲୁଆ ତେଣୁ ଜୀବନକୁ ପାଣି ଛଡ଼ାଇ ଦଉଡ଼ିଲା । ଗୋଟିଏ

ପାହାଡ଼ ଉପରକୁ ଚଢ଼ିଗଲା । ଟିକିଏ ଠିଆ ହେଲା । ଚାରିଆଡ଼କୁ ତର ତର ହୋଇ ଆଖିବୁଲାଇ ଆଣିଲା ।

ସେଇ ପାହାଡ଼ ତଳେ ରେଳରାସ୍ତାଟିଏ ପଡ଼ିଛି । ଭାଗ୍ୟକୁ ଠିକ୍ ସେତିକି ବେଳକୁ ଗୋଟିଏ ମାଲ୍‌ଗାଡ଼ି ମାଡ଼ିଆସିଲା । ସେଥିରେ ମୋଟା କାଠଗଡ଼ସବୁ ଲଦା ହୋଇଥିଲା ।

ବିଲୁଆ ତ ଭାରି ବୁଦ୍ଧିଆ । ତାକୁ ହଠାତ୍ ଗୋଟିଏ ବୁଦ୍ଧି ଦିଶିଲା । ସେ ଖପ୍ କରି ସେଇ ରେଲଗାଡ଼ି ଉପରକୁ ଡେଇଁ ପଡ଼ିଲା । ସେଥିରେ ଲଦା ହୋଇଥିବା କାଠଗଡ଼ ଉପରେ ଆରାମରେ ବସିରହିଲା । ଲୋକଟିକୁ ଓ କୁକୁରମାନଙ୍କୁ ଥରେ ଚାହିଁ ଭାରି ହସିଲା । ମାଲଗାଡ଼ି ଆଗକୁ ମାଡ଼ି ଚାଲିଥାଏ । କୁକୁରଗୁଡ଼ିକ ଆଉ ଶିକାରୀ ବିଚରା ବୋକାଙ୍କ ପରି ଚାହିଁଥାନ୍ତି ।

ଦୁଇ ତିନିଶହ କିଲୋମିଟର ଯିବାପରେ ରେଲଗାଡ଼ିଟି ଆଉ ଗୋଟିଏ ବଣ ଭିତରେ ଚାଲିଲା । ବିଲୁଆ ସେଇ ବଣରେ ସୁବିଧା ଜାଗାଟିଏ ଦେଖି ଖପ୍ କରି ଗାଡ଼ିରୁ ଡେଇଁ ପଡ଼ିଲା । କି ମଜା ! କେଡ଼େ ବିପଦରୁ ସତେ ସେ ରକ୍ଷା ପାଇଗଲା ?

କୁକୁରମାନଙ୍କୁ ସାଙ୍ଗରେ ଧରି ମନ ଦୁଃଖରେ ଶିକାରୀଟି ଘରକୁ ଫେରିଲା । କେଡ଼େ ଶିକାରଟିଏ ହାତରୁ ଖସିଗଲା ସତେ !

ବିଲୁଆର ବୁଦ୍ଧି ତାକୁ ବିପଦରୁ ବଞ୍ଚାଇ ଦେଲା ।



# ହରିଣର ଚାଲାକି

ରଣପୁର ଜଙ୍ଗଲ । ଥରେ ହରିଣଟିଏ ଆଉ ହରିଣୀଟିଏ ସେଠାରେ ରହୁଥିଲେ । ଖାଇପିଇ ଭାରି ଆନନ୍ଦରେ ସମୟ କଟାଉଥିଲେ । ଦିନେ ହରିଣଟି ହରିଣୀକୁ ଏକୁଟିଆ ଛାଡ଼ିଦେଇ ଜଙ୍ଗଲ ଭିତରକୁ ଚାଲିଗଲା ।

ଏଇ ସମୟରେ ହଠାତ୍ ଗୁଳି ଫୁଟିବାର ଶବ୍ଦ ହେଲା । ସେ ଚମକି ପଡ଼ିଲା । ଗୁଳି ଫୁଟିଲେ ତାର ଫଳ କ'ଣ ହୁଏ, ତାକୁ ଅଜଣା ନଥିଲା । ସେ ତେଣୁ ଡେରି ନ କରି ସେଇ ଶବ୍ଦ ଯେଉଁଆଡୁ ଆସୁଥିଲା, ତାର ଓଲଟା ଦିଗକୁ ଧାଇଁ ପଳାଇଲା । ଏଇ ସମୟରେ ଗୋଟିଏ ଗୁଳି ଆସି ତାର କାନମୁଣ୍ଡା ପାଖଦେଇ ଚାଲିଗଲା । ସେ ଆହୁରି ଡରିଗଲା । ସେ ଅଳ୍ପକେ ବଞ୍ଚିଗଲା ସତେ !

ପ୍ରାଣପଣେ ଦୌଡ଼ି ସେ ଗୋଟିଏ ଧାନକିଆରୀ ପାଖରେ ପହଞ୍ଚିଲା । ଆଉ ଦୌଡ଼ିବାକୁ ତାର ବଳ ପାଇଲା ନାହିଁ । ସେ ଧଇଁ ସଇଁ ହୋଇ ଯାଇଥିଲା । ସେଠାରେ ସେ କିଛି ସମୟ ଠିଆ ହୋଇ ଥକ୍କା ମାରିଲା । ତା ଦେହରୁ ଗମ୍ ଗମ୍ ହୋଇ ଝାଳ ବୋହିଗଲା । ଖୁବ୍ ଜୋରରେ ନିଃଶ୍ୱାସ ମାରୁଥାଏ । ଆଗରେ ସେ ଗୋଟିଏ ବଡ଼ ଗହଳିଆ ବୁଦା ଦେଖିଲା । ବୁଦାର ଗହଳଲଂଟା ତଳେ ଖରା ବି ପଡ଼ିପାରୁ ନ ଥିଲା । ସେ ଠିକ୍ କରିନେଲା ବୁଦା ଭିତରେ ଦିନଯାକ ଛପି ରହିବ ଆଉ ଅନ୍ଧାର ଘୋଟିଗଲେ ଜଙ୍ଗଲକୁ ଚାଲିଯିବ ।

ଏହା ଭାବି ସେ ବୁଦା ଭିତରେ ପଶିଗଲା । ବୁଦାର କଅଁଳପତ୍ର ସବୁ ଦେଖି ତାର ପାଟିରୁ ଲାଳ ବହିଲା । ସେ ଗୋଟିଏ ଗୋଟିଏ ପତ୍ର ଚାଖି ଚାଖି ପେଟେ ଖାଇଦେଲା । ସେତେବେଳେ ଶିକାରୀ କଥା ପୂରା ଭୁଲି ଯାଇଥିଲା । ସେ ହରିଣୀଟା ସାଥିରେ ନ ଥିବାରୁ ମନ ଖରାପ କରୁଥିଲା । କେତେ କଅଁଳ ପତ୍ର ସେ ଖାଇ ନ ଥାନ୍ତା ! ତେବେ ତାକୁ କେବେ ଆଣି ମନବୋଧ କରି ଖୁଆଇବାକୁ ପାଞ୍ଚିଲା ।



କେତେ ସମୟ ପରେ ସେ ଚାରିଆଡ଼କୁ ଚାହିଁଲା । ଦେଖିଲା ପତ୍ର ଖାଇ ଖାଇ ବୁଦାର ଗୋଟିଏ ପାଖ ପୂରା ଫାଙ୍କା ହୋଇଗଲାଣି । ଯେ କେହି ତାକୁ ଏବେ ବାହାରୁ ଦେଖିପାରିବ । ନିଜର ଲୋଭ ଯୋଗୁଁ ସେ ନିଜ ଉପରେ ଖୁବ୍ ରାଗିଲା, ନିଜକୁ ଭାରି ଧିକ୍କାର କଲା । ଏବେ ଆଉ ଉପାୟ ନାହିଁ । ଦେଖିଲା ତା ଆଗରେ ଯମ ପରି ଶିକାରୀ ଜଣକ ଠିଆ ହୋଇଛି । ହାତରେ ତାର ବନ୍ଧୁକ । ତା ଆଡ଼କୁ ପଛ କରିଛି ।

ସେ ମୁହଁ ବୁଲାଇଲା ମାତ୍ରେ ତା' ଉପରେ ତାର ଆଖି ପଡ଼ିବ । ଗୋଟିଏ ଗୁଳିକୁ ତାର ଜୀବନ ନାହିଁ । ଆଉ ଧାଇଁ ପଳାଇବାର ଉପାୟ ବି ନାହିଁ । ହରିଣ ଭାବିଲା—ମରିବି ତ ମରିବି । ଥରେ ଶେଷ ଚେଷ୍ଟା କରିବି ନାହିଁ କାହିଁକି ?

ସେ ବୁଦା ଭିତରୁ ଭୁସ୍‌କରି ବାହାରି ପଡ଼ିଲା । ଆଖି ପିଛୁଳାକେ ଯାଇ ସେ ଶିକାରୀକୁ ଖୁବ୍ ଜୋରରେ ଗୋଟିଏ ଧକ୍‌କା ଦେଲା । ଶିକାରୀ ପଡ଼ିଗଲା । ବନ୍ଧୁକଟା ତା ହାତରୁ ଛିଟିକି କିଛି ଦୂରରେ ପଡ଼ିଲା । ସେ ପ୍ରଥମେ ଡରିଯାଇଥିଲେ ମଧ୍ୟ ହରିଣକୁ ଦେଖି ଗୁଳି କରିବାକୁ ବାହାରିଲା । ତରତର ହୋଇ ବନ୍ଧୁକ ଗୋଟାଇ ଧରିବା ବେଳକୁ ହରିଣ ସେଠାରୁ ପାର ହୋଇ ଯାଇଥିଲା ।

ହରିଣ ବଣରେ ଧଇଁସଇଁ ହୋଇ ହରିଣୀକୁ ଖୋଜିଲା । ଶେଷରେ ସେ ଝାଳରେ ଓଦା, ଆଖି ଦି'ଟା ଲାଲଗୁଲାଲ । ପାଟିରୁ ଫେଣ ବାହାରୁଥାଏ । କିଛି ସମୟ ପରେ ସେ ହରିଣୀକୁ ଦେଖିଲା । ତାକୁ ସବୁକଥା କହିଲା ।

ହରିଣୀ କହିଲା—ଲୋଭରୁ ମୃତ୍ୟୁ । ତୁମେ ଆଉ ଏମିତି ଭୁଲ କରିବ ନାହିଁ । ଯାହା ଆଶ୍ରାରେ ରହିଲ, ତାର କ୍ଷତି କଲ । ତୁମ ଉପରେ ଶିକାରୀର ଆଖି ପଡ଼ିଥିଲେ, ତୁମକୁ ସେ ଆଉ ରଖିଥାନ୍ତା ? ମୁଁ କ'ଣ ତୁମକୁ ଆଉ ପାଇଥାନ୍ତି !!

ହରିଣ କାନମୋଡ଼ି କହିଲା—ମୁଁ ଆଉଦିନେ ଏମିତି ଭୁଲିକାମ କରିବି ନାହିଁ । ଏମିତି ଲୋଭ ମଧ୍ୟ କରିବି ନାହିଁ ।

ସେହି ଦିନଠାରୁ ସେମାନେ ଆନନ୍ଦରେ ରହିଲେ ।



# ହାତୀର ହିତ

ଆଗେ ଚନ୍ଦକା ଜଙ୍ଗଲରେ ଗୋଟିଏ ଦନ୍ତାହାତୀ ରହୁଥିଲା । ଥରେ ସେ ଯାଉ ଯାଉ ତା'ର ଗୋଡ଼ରେ ଗୋଟିଏ ବଡ଼ କଣ୍ଟା ଗଳିଗଲା । ସେ ବହୁତ ଚେଷ୍ଟା କଲା କିନ୍ତୁ କଣ୍ଟାଟିକୁ କାଢ଼ି ପାରିଲା ନାହିଁ । ତା'ର ଗୋଡ଼ ଫୁଲିଗଲା । ସେ ଆଉ ଚାଲିପାରିଲା ନାହିଁ । ଖାଇବା ଜିନିଷ ଖୋଜି ପାରିଲା ନାହିଁ । ସେ ଗୋଟିଏ ଜାଗାରେ ପଡ଼ି ରହିଲା । ନ ଖାଇ ନ ପିଇ ତା'ର ଦେହ କଣ୍ଟାସାର ହେଲା ।



ଜଣେ କାଠୁରିଆ ସେ ବାଟେ ଯାଉ ଯାଉ ହାତୀଟିକୁ ପଡ଼ିଥିବାର ଦେଖିଲା । ସେ ଚାହିଁ ଦେଖିଲା, ହାତୀର ଗୋଟିଏ ଗୋଡ଼ ଫୁଲିଛି ଆଉ ତହିଁରେ ସମ୍ଭବତଃ ଗୋଟିଏ କଣ୍ଟା ପଶିଛି ।

ସେ ଆଦୌ ଡରିଲା ନାହିଁ । ପାଖକୁ ଯାଇ କଣ୍ଟାଟି ଠାବ କଲା । କଣ୍ଟା ରହିଥିବା ଜାଗାଟିକୁ ଚିପିଦେବାରୁ ପୁଳାଏ ପୂଜ ସାଥିରେ କଣ୍ଟାଟି ବାହାରି ପଡ଼ିଲା । ତା'ପରେ କାଠୁରିଆଟି ସେଠାରୁ ଚାଲିଆସିଲା । କିଛିଦିନ ପରେ ହାତୀକଥା ମଧ ସେ ଭୁଲିଗଲା । କେତେଦିନ ପରେ ସେଇ ଲୋକଟି ଗୋଟିଏ ସର୍କସ ଦେଖିବାକୁ ଯାଇଥିଲା । ସେ ଅଳ୍ପ ପଇସାର ଟିକେଟ୍‌ଟିଏ କିଣିଥିବାରୁ ସବା ପଛରେ ବସିଥିଲା । କେତେ ସମୟ ପରେ ଗୋଟିଏ ହାତୀ ଖେଳ ଦେଖାଇବାକୁ ଘେର ଭିତରକୁ ଆସିଲା । ସେ ପଛକୁ ଚାହିଁବା ମାତ୍ରେ ଚୁପ୍ ହୋଇ ଠିଆ ହେଲା । ତା'ପରେ ସେ ଘେର ପାର ହୋଇ ଧୀରେ ଧୀରେ ସେଇ କାଠୁରିଆ ଆଡ଼କୁ ଚାଲିଲା । ହାତୀର ମାହୁନ୍ତ କାବାକାଠ ହୋଇଗଲା । କାଳେ ହାତୀର କାହା ଉପରେ ରାଗ ଥିବ । ତାକୁ ଭିଡ଼ି ଆଣି କାଳେ ସେ ଚକଟି ଦେବ !

ତେବେ ସେ ହାତୀ ପଛେ ପଛେ ଯାଇ ଲୋକମାନଙ୍କୁ କହୁଥାନ୍ତି– ଆପଣମାନେ ଭୟ କରନ୍ତୁ ନାହିଁ । ସେ ଖୁବ୍ ଧୀରସ୍ଥିର ପୋଷାହାତୀ । କାହାର କିଛି କ୍ଷତି କରିବ ନାହିଁ । ଥୟ ଧରନ୍ତୁ । ଧାଁ ଧପଡ଼ କରନ୍ତୁ ନାହିଁ ।

ହାତୀ କ'ଣ କରିବ ଦେଖିବାକୁ ସମସ୍ତେ ତାକୁ ଚାହିଁ ରହିଥାନ୍ତି । ହାତୀ ପଛକୁ ଯାଇ କାଠୁରିଆ ଜଣଙ୍କୁ ନିଜ ଶୁଣ୍ଢରେ ଉଠାଇ ଆଣିଲା । ସବା ଆଗରେ ପଡ଼ିଥିବା ଗୋଟିଏ ଚଉକିରେ ତାକୁ ବସାଇଦେଲା । ଘେର ଭିତରକୁ ଯାଇ ତାର ଖେଳ ଦେଖାଇଲା । ସମସ୍ତେ ହାତୀର ଏ କାମ ଦେଖି ତାଟକା ହେଲେ ।

କାଠୁରିଆ ଜଣକ ପ୍ରଥମେ ବଡ଼ ଆଶ୍ଚର୍ଯ୍ୟ ହେଲା । କେତେ ସମୟ ଭାବିବା ପରେ ହାତୀର କଥା ତାର ମନେପଡ଼ିଲା । ସେ ଜାଣି ପାରିଲା—ହାତୀ ଏ ଭିତରେ ଧରାପଡ଼ି ସର୍କସ ଦଳରେ ମିଶିଛି । ହେଲେ ଦିନେ ତା'ର ଉପକାର କରିଥିବା ମଣିଷଟିକୁ ଭୁଲି ପାରିନାହିଁ । ତାର ହିତ କରିବାକୁ ସେ ଚାହିଁଛି । ଆନନ୍ଦରେ କାଠୁରିଆ ଆଖିରୁ ଲୁହ ଦୁଇଧାର ବହିଗଲା ।

ସର୍କସ ଭାଙ୍ଗିବା ପରେ ସମସ୍ତଙ୍କୁ ସେ ହାତୀର କାହାଣୀ କହିଲା । ସମସ୍ତେ ହାତୀର ବୁଦ୍ଧିକୁ ତାରିଫ ନକରି ରହିପାରିଲେ ନାହିଁ । ସତେ ହାତୀ ଭାରି ବୁଦ୍ଧିଆ ! ବହୁଦିନ ପାଇଁ ସେ ମନେ ରଖେ ମଧ୍ୟ । କିନ୍ତୁ ସେ ଥରେ ଥରେ କାହା ଉପରେ ଯେମିତି ରାଗିଥିଲେ ଦାଉ ସାଧେ, ସେମିତି କାହାଠାରୁ ଉପକାର ପାଇଥିଲେ ତା'ର ହିତ କରେ ।



# ସିଂହର ସମାନ ବିଚାର

ସିଂହ ପଶୁମାନଙ୍କର ରାଜା । ସେ ଦିନେ ତାର ରାଇଜ ଅନ୍ଧାରୁଆ ଜଙ୍ଗଲରେ ଗୋଟିଏ ସଭା ଡାକିଲା । ସବୁ ପଶୁ ସେଇ ସଭାକୁ ଆସିଲେ । ମଣିଷମାନେ ସେମାନଙ୍କୁ ମାରୁଛନ୍ତି—ସେମାନଙ୍କୁ ହଇରାଣ କରୁଛନ୍ତି, ସେଥିପାଇଁ କ'ଣ କରିବାକୁ ପଡ଼ିବ, ଏଇସବୁ ବିଚାର ପଡ଼ିଲା ।

ଶେଷରେ ଠିକ୍ ହେଲା—ସେମାନେ ଯୁଦ୍ଧ ଶିଖିବେ ଏବଂ ବିପଦ ପଡ଼ିଲେ ନିଜକୁ ରକ୍ଷା କରିବେ । ସିଂହ ବାଘକୁ ମନ୍ତ୍ରୀ ଆଉ ଭାଲୁକୁ ସେନାପତି କଲା । ଭାଲୁ ପଶୁମାନଙ୍କୁ ଯୁଦ୍ଧ ଶିକ୍ଷା ଦେବାରେ ଲାଗି ପଡ଼ିଲା ।

ଭାଲୁ ତା' ମୁଣ୍ଡରେ ଗୋଟିଏ ଟୋପି ପିନ୍ଧିଲା । ଅଣ୍ଟାରେ ଗୋଟିଏ ଦଉଡ଼ି ବାନ୍ଧିଲା । ସେଥିରେ ଗୋଟିଏ ଭଲ ଦାଜୁଆ ଛୁରୀ ଝୁଲାଇଲା । ହାତରେ ଖଣ୍ଡେ ଛୋଟ ବାଡ଼ି ଧରିଲା । ପଶୁମାନଙ୍କୁ ଡ୍ରିଲ ଶିଖାଇଲା । ଏକ, ଦୁଇ, ତିନି କହି ତାଲିମ ଦେଲା ।

ଗଧିଆ, ବିଲୁଆ, ହରିଣ, ଚିତାବାଘ, ହାତୀ ପ୍ରଭୃତି ଅନେକ ପଶୁ ଆସି ଯୁଦ୍ଧ ଶିକ୍ଷା କଲେ । କେତେକ ପଶୁଙ୍କୁ ଭାଲୁ ସୈନ୍ୟ ହେବାକୁ ମନାକଲା । କାରଣ ସେମାନେ ଜାତିରେ ଅଳସୁଆ ଆଉ ବୋକା ।

ବଣ ମଝିରେ ଗୋଟିଏ ଖୋଲା ପଡ଼ିଆ । ସେଠାରେ ଭାଲୁ ସମସ୍ତଙ୍କୁ ଆଦେଶ ଦେଉଥାଏ—ଏକ, ଦୁଇ, ତିନ୍, ବାଏଁ, ଡାଏଁ ସମସ୍ତେ ଡ୍ରିଲ କରୁଥାନ୍ତି ।



ପ୍ରତିଦିନ ସକାଳେ ଡ୍ରିଲ ଚାଲେ । ଗୋଟିଏ ମେଣ୍ଢା ଓ ଗୋଟିଏ ଗଧ ପଡ଼ିଆ ବାହାରେ ରହି ଡ୍ରିଲ୍ ଦେଖନ୍ତି । ଦିନେ ଗଧଟି ମେଣ୍ଢାକୁ କହିଲା—ସୈନ୍ୟ ହେବାକୁ ଆମେ ଅପାରଗ ହେଲୁ । ଥରେ ମୁଁ ଯାଇଥିଲି ଯେ ଭାଲୁ ମୋତେ ଯୁଦ୍ଧ ଶିକ୍ଷା ଦେବାକୁ ମନା କଲା । ମୁଁ ସରଳ ହୋଇଥିବାରୁ ମୋତେ ଏମିତି ହତାଦର କଲା । ମୁଁ ସିନା ଦେଖିବାକୁ ଏମିତି । ମୋର କ'ଣ ବଳ କମ୍ ? ମୁଁ କେତେ ମାଲ ବୋହିପାରେ ତୁ ଦେଖିଛୁ ତ ? ଯେତେ ସେ ସୈନ୍ୟ କରିଛି, କେହି ମୋ ପରି ଗୋଟେ ନାତ ମାରି ପାରିବେ ?

ମେଣ୍ଢା ମଧ ମନ ଦୁଃଖରେ ସେମିତି କହିଲା—ମୋର ତ ସେଇ ଦଶା । ଆଉ ତୁ କାହିଁକି ମୋତେ ସେକଥା କହୁଚୁ ? ଭାଲୁ ସେନାପତିଙ୍କୁ

ହେଲୁ ଆମେ ଓଲୁ ଆଉ ଅଳସୁଆ । ହେଁ, ତା' ସୈନ୍ୟମାନଙ୍କ ଭିତରେ ଗୋଟିଏ କେହି ମୋ ପରି ମୁଣ୍ଡିଆଟେ ମାରୁ ତ ? କବି ପରା କହିଛନ୍ତି—ମେଣ୍ଢା ମୁଣ୍ଡ ବଡ଼ ଟାଣ, ତା ମୁଣ୍ଡିଆକୁ ସାବଧାନ ! ମୁଁ ଯାଇ ସେଇକଥା କହିଲି ଯେ ମୋତେ ମଧ ନାପସନ୍ଦ କରି ଫେରାଇ ଦେଲା । ହୁଁ...

ସେମାନେ ଏମିତି କଥା ହେଉଛନ୍ତି । ପଛରୁ ଜଣେ କିଏ କହିଲା—ତୁମେ ସବୁ ଏମିତି କ'ଣ କହୁଚ ? ମୁଁ ସୈନ୍ୟ ହେବାକୁ ଆସିଛି । ମୋତେ କ'ଣ ସୈନ୍ୟ କରାଇବେ ନାହିଁ । ଫେରିପଡ଼ି ଚାହିଁଲା ବେଳକୁ ଗୋଟିଏ ବୁଢ଼ା କୋକି ପଛରେ ଠିଆ ହୋଇଛି । ଗଧ ତାକୁ ଦେଖି ଫେଁକରି ହସି ଉଠିଲା । କହିଲା— ଆରେ ଆମକୁ ତ ସେ ମନା କରିଦେଲା । ଆମେ ଯଦି ଅଯୋଗ୍ୟ ହେଲୁ, ତୋତେ କିଏ ସୈନ୍ୟ କରାଇବ ? କିମିତି ତୁ ବୃଥା ଆଶା କରୁଚୁ ?

କୋକି ଟିକିଏ ହେଲେ ଦବି ନ ଯାଇ କହିଲା—ତୁମେ ଏଥିପାଇଁ ତିଳେ ହେଲେ ଶୋଚନା କରନାହିଁ । ଚାଲ ସାଙ୍ଗ ହୋଇ ଯିବା । ଆମମାନଙ୍କୁ କିପରି ସୈନ୍ୟ ନ କରିବେ ଦେଖିବା ।

ଗଧ ଆଉ ମେଣ୍ଢା ବୁଢ଼ାକୋକି ସାଥିରେ ଚାଲିଲେ । ପ୍ରଥମେ ପ୍ୟାରେଡ଼ ପଡ଼ିଆକୁ ଯାଇ ଭାଲୁ ସେନାପତିଙ୍କୁ ପ୍ରଣାମ ଜଣାଇଲେ । ଭାଲୁ ଡ୍ରିଲ ଶିଖାଉଥିଲା । ସେ ରାଗରେ ତମ ତମ ହୋଇ କହିଲା— ଆରେ, ତୁମେସବୁ ଏଠାକୁ କାଲିଁକି ଆସିଲ ? ପଳାଅ, ପଳାଅ । ନହେଲେ ତୁମକୁ ଦଳି ଚକଟି ତୁଳା କରିଦେବି । ହଇରେ ! ତମର କି ହିମତ୍ ଅଛି ଯେ ସୈନ୍ୟ ହେବାକୁ ମନ ବଳାଉଛ ?

କୋକି ସୈନ୍ୟ ହେବାକୁ ଅଳି କରିବାରୁ ଭାଲୁ ଆହୁରି ରାଗି ଗଲା । "ଘଁ ଘଁ" କରି ବଡ଼ ଗର୍ଜ୍ଜନ କଲା । ତା ଗର୍ଜନ ଶୁଣି ସେଠାକୁ ସିଂହ ଆସି କ'ଣ ହାଲ ପଚାରିଲା । ଭାଲୁ ଥଣ୍ଡା ପଡ଼ିଯାଇ କହିଲା– ହଜୁର ଏମାନେ ସୈନ୍ୟ ହେବାକୁ ଲଗାଇଛନ୍ତି । ଯେତେ ମନା କଲେ ବି ଶୁଣୁ ନାହାନ୍ତି । ମୁଁ ବଡ଼ ଦିକ୍‌ଦାର ହେଲିଣି ।

ସିଂହ ସେମାନଙ୍କୁ ଚାହିଁଲା । ଭାଲୁକୁ କହିଲା—ଦେଖ, ସମସ୍ତେ ଆମର ପଶୁଭାଇ । ସମସ୍ତେ ଆମର ସୈନ୍ୟ ହେବା ଦରକାର । ଯାହାଠାରେ ଯେଉଁ ଗୁଣ ଅଛି ତାକୁ କାମରେ ଲଗାଇବା ଉଚିତ୍ । ତୁମେ ଏମାନଙ୍କୁ ତଡ଼ିଦେବା ଠିକ୍ ନୁହେଁ । କୋକିଟିକୁ ଦେଖ, ବୁଢ଼ା ହୋଇ ଦୁର୍ବଳ ସିନା ହୋଇଯାଇଛି, ସେ ଭାରି ଚାଲାକ୍ । ତାର ଅଭିଜ୍ଞତା ଅଛି । ସେମିତି ଗଧ ମଧ୍ୟ ଭଲ ସୈନ୍ୟ ହୋଇପାରିବ । ଶତ୍ରୁ ଆସିବାର ଦେଖି ସେ ଏମିତି ରାବ କରିବ ଯେ ଶତ୍ରୁ ଡରି ଥରି ପଳାଇବ । ନାତ ମାରିଲେ ଯେତେ ପହିଲମାନ ବୀର ହେଲେ ବି ଆଣ୍ଠେଇ ପଡ଼ିବ । ସେମିତି ମେଣ୍ଢା ମୁଣ୍ଡକୁ ସାବଧାନ ! ଗୋଟିଏ ମୁଣ୍ଡିଆ କଷି ଦେଲେ, ଆରେ ବାପରେ କହି ଶତ୍ରୁ ପଳାଇବ । ଦେଖ ସେନାପତି ! ଏମାନଙ୍କୁ ଛାଡ଼ନି, ଏମାନେ ଆମର ଭାଇ । ଏମାନଙ୍କୁ ଯୁଦ୍ଧ ଶିଖାଇଦିଅ । କାହାକୁ ଊଣା ବୋଲି ଭାବନାହିଁ ।

ସେଦିନଠାରୁ ଗଧ, ମେଣ୍ଢା ଆଉ କୋକି ସୈନ୍ୟ ଦଳରେ ମିଶିଲେ । ସିଂହର ସୁବିଚାର ଯୋଗୁ ଅନ୍ୟମାନଙ୍କ ସହିତ ସେମାନେ ସମାନ ହୋଇ ପାରିଲେ । ସେଦିନ ଗଧ ଆନନ୍ଦରେ ଏମିତି ପାଟି କରି ଉଠିଥିଲା ଯେ, ସମସ୍ତେ ହସି ହସି ସାରା ଜଙ୍ଗଲକୁ କମ୍ପାଇ ଦେଇଥିଲେ ।



# କୋଇଲିର ଗୀତ

ଜଣଙ୍କ ଘରେ ଗୋଟିଏ ବିରାଡ଼ି ଓ ଗୋଟିଏ କୁକୁର ଥିଲେ । ସାଥି ହୋଇ ସେମାନେ ଚଳୁଥିଲେ । ସେହି ଘର ପଛପଟେ ଗୋଟିଏ ବଡ଼ ବରଗଛ । ସେହି ଗଛରେ ଦୁଇଟି କୋଇଲି ରହୁଥିଲେ । ସାଙ୍ଗ ହୋଇ ସେମାନେ ଚରିବୁଲି ଏହି ବସାରେ ସମୟ କଟାନ୍ତି । ଅଣ୍ଡିରା କୋଇଲିଟି ଖୁବ୍ ସୁନ୍ଦର ଗୀତ ଗାଏ । ସେହି ଗୀତ ଶୁଣିବାକୁ ଭାରି ଭଲ ପାଉଥିଲେ ବରଗଛ ପାଖରେ ଥିବା ଘରର ଘରଣୀ । କିନ୍ତୁ ସେଇ ଘରେ ଥିବା ବିରାଡ଼ି କୋଇଲିର ଗୀତକୁ ସୁଖପାଏ ନାହିଁ । ବରଂ ସେ ବିରକ୍ତ ହୋଇ ତାକୁ ମାରିଦେବାକୁ ଓର ଉଣ୍ଡୁଥିଲା । କେତେବେଳେ ସେ କୋଇଲିଟାକୁ ପାଖରେ ପାଇଲେ ତାର ବେକମୋଡ଼ି ଖାଇଦିଅନ୍ତା !

ଦିନେ ମାଈ କୋଇଲିଟି ବସାରେ ବସି ଅଣ୍ଡା ଦେଉଥାଏ । ତାକୁ ନେଇ ପୁଣି କାଉ ବସାରେ ରଖିବା ଏକ ବଡ଼ କାମ । ଅଣ୍ଡିରା କୋଇଲିଟି ତା ଘରଣୀ ପାଇଁ ଆହାର ଯୋଗାଡ଼ କରିବାକୁ ଭାରି ବ୍ୟସ୍ତ । ଦିନେ ସେ ବାଡ଼ିରେ ଗୋଟିଏ ତରାଟଗଛ ତଳେ ଆହାର ସାଉଁଟୁ ଥିଲା, ବିରାଡ଼ି ପାଖ ବୁଦାତଳେ ଲୁଚିଥିଲା । କୋଇଲି ସେଠାକୁ ଆସିବା ମାତ୍ରେ ସେ ଆଗ ଗୋଡ଼ରେ ତାକୁ ମାଡ଼ି ବସିଲା । ବିରାଡ଼ିର ମନ ଭାରି ଖୁସି । ଏତେଦିନେ ସେ ହାବୁଡ଼େ ପଡ଼ିଛି ।

କୋଇଲି ବ୍ୟସ୍ତ ହୋଇ କହିଲା—ହେ ପୁଷି ନନା, ଏ କ'ଣ କରୁଚୁ ? ତୋ ନଖଗୁଡ଼ାକ ମୋ ପିଠିରେ ବୁଡ଼ିଯାଉଛି । ବଡ଼ କାଟୁଛି ସତେ ! ଛାଡ଼ ଛାଡ଼ । ଛାଡ଼ି ଦିଅ... ଓଃ...

ବିରାଡ଼ି କହିଲା—ହୁଁ ତୋତେ ଛାଡ଼ିଦେବି ବୋଲି ଏତେ କଷ୍ଟ କରି ଧରିଛି ନାଁ କ'ଣ ? କେତେ ଦିନ ହେଲା ଉଣ୍ଡି ଉଣ୍ଡି ଆଜି ତୋତେ ପାଇଛି । ତୁ ଯିବୁ କୁଆଡ଼େ ?

କୋଇଲି କହିଲା—ଭାଇ, ତୁ ଏମିତି ହେଲେ କେମିତି ହେବ ! ମୋତେ ମାରିଲେ ତୋ ପେଟ ପୂରିବ ନାହିଁ । ମୁଁ ବଞ୍ଚିଥିଲେ ତୋତେ କେତେ ସାହା ହେବି । କିଛି ତ କରି ନ ପାରିଲେ ଗୀତ ଗାଇବି ? ତୁ ଶୁଣି ଖୁସି ହେବୁ ।



ବିରାଡ଼ି କହିଲା—ମୋର ସେ ଗୀତ ଲୋଡ଼ା ନାହିଁ । ଆମ ଘରଣୀ ତୋ ଗୀତ ଶୁଣନ୍ତୁ । ସେ ତୋତେ ରକ୍ଷା କରନ୍ତୁ । ମୋର ଦରକାର ତୋର ନରମ ମାଂସ । ଆଜି ତୋତେ ପାଇଛି, ନିଶ୍ଚେ ତୋତେ ଖାଇବି ।

କୋଇଲି କାକୁତି ମିନତିକରି କହିଲା, ଭାଇ, ତୁ ଅବୁଝା ହୁଅନାହିଁ । ମାଈ କୋଇଲି ଅଣ୍ଡାଦେଇ ସାରିବଣି । ଅଣ୍ଡାନେଇ ମୁଁ ଗୋଟିଏ କାଉ ବସାରେ ନ ରଖିଲେ କାଞ୍ଜିଆ ହୋଇଯିବ । ମୋତେ ଦୟା କରି ଛାଡ଼ିଦେ ।

ବିରାଡ଼ି ମୁରୁକି ହସି କହିଲା—ହଇରେ, ତୋ ଅଣ୍ଡା କାଞ୍ଜିଆ ହେଲେ ମୋର କ'ଣ ଗଲା । ମୋ ଖାଇବାଟାକୁ ସେଥିପାଇଁ କାହିଁକି ନଷ୍ଟ କରିବି ? ମୁଁ କ'ଣ ଏତେ ବୋକା ହୋଇଚି ?

କୋଇଲି ଖୋସାମଦିଆ ସ୍ୱରରେ କହିଲା—ଦେଖ, ତୋର ସାନ୍ତାଣୀ ତୋତେ କେତେ ଭଲ ପା'ନ୍ତି । କେତେ ଭଲ ଦରବ ତୋତେ ଖାଇବାକୁ ଦିଅନ୍ତି ? ତାଙ୍କୁ ପରା ମୋ ଗୀତ ଶୁଣିବାକୁ ଭାରି ଭଲ ଲାଗେ ! ତୁ ମୋତେ ମାରିଦେଲେ, ତାଙ୍କୁ କିଏ ଗୀତ ଶୁଣାଇବ ? ମୋତେ ମାରିଦେଲେ ତାଙ୍କ ମନ କେଡ଼େ ଦୁଃଖ ହେବ !

ବିରାଡ଼ି ଟିକିଏ ନରମ ହୋଇ କହିଲା—ହଁ ସାନ୍ତାଣୀଙ୍କ ମନଦୁଃଖ ହେବ । ଏବେ ତ ବେଳ ହେଲାଣି । ଗୀତଟେ ଗାଇ ଦେଉନୁ ! ଆଗ ସେ ଗୀତଟା ଶୁଣନ୍ତୁ । ତା'ପରେ ତୋ କଥା ବୁଝିବା !

କୋଇଲି ଏବେ ମନରେ ସାହସ ବାନ୍ଧି କହିଲା—ତୁ ମୋ ପିଠିରେ ଗୋଡ଼ ରଖିଛୁ । ମୋ ଛାତି ଚାପି ହୋଇଯାଉଛି । ମନ ଫୁଲଣା ଗୀତ ଗାଇବି କେମିତି । ଏମିତି କାନ୍ଦି କୁନ୍ଥାଇ କି ଗୀତ ଗାଇବି ଭଲା !

ବିରାଡ଼ି ତ ମହା ଛଉକା । ସେ କି ଏଥିରେ ଭୁଲେ ? ସେ କହିଲା— ସେ କଥା ହେବ ନାହିଁ । ତୁ ଏମିତି ଗୀତ ବୋଲିବୁ ଯଦି ବୋଲ । ନ ହେଲେ ମୋ କଥା ମୁଁ କରିବି ।

ଏଇ ସମୟରେ ବିରାଡ଼ିର ସାଙ୍ଗ କୁକୁର କୁଆଡୁ ଦୌଡ଼ି ଆସିଲା । ସେ ସବୁବେଳେ ବିରାଡ଼ିକୁ ଗଡ଼ାଇ ତଡ଼ାଇ ଖେଳେ । ସେଦିନ ସେମିତି ସେ ବିରାଡ଼ିକୁ ଠେଲାପେଲା କଲା । ବିରାଡ଼ି ବି ରାଗରେ କୋଇଲି କଥା ଭୁଲିଯାଇ କୁକୁରକୁ ଠେଲିବାକୁ ଲାଗିଗଲା ।

କିଛି ସମୟ ପରେ ଫେରିଆସି କୋଇଲିକୁ ଖୋଜିଲା । ସେତେବେଳେ କୋଇଲି ଉଡ଼ିଯାଇ ଗଛ ଉପରେ ବସି ଗୀତ ଗାଉଛି—

କୁଉ—କୁଉ—କୁଉ—



# ଗଧିଆର ମଇଁଷି ବେଶ

ଥରେ ବଣରେ ଗୋଟିଏ ମସ୍ତବଡ଼ ସଭା ବସିଥିଲା । ତା'ର ଆୟୋଜନ କରିଥିଲେ ସିଂହ ମହାରାଜା । ସବୁ ପଶୁଙ୍କୁ ଜଣାଇ ଦିଆଯାଇଥିଲା ଯେ କାଳେ ଚିତାବାଘ କି କଲରାପତ୍ରିଆ ବାଘ ଭୟରେ ଅନ୍ୟ ପଶୁମାନେ ନ ଆସିବେ, ସେଥିପାଇଁ ସଭାକୁ ଯିବା ଆସିବା ବେଳେ କେହି କାହାକୁ ମାରିପାରିବେ ନାହିଁ । ସଭାରେ ଯୋଗଦେବାକୁ ସବୁ ପଶୁ ବାଧ୍ୟ ।

ତେବେ ସେଇ ସଭାକୁ ଗଧିଆ, ବିଲୁଆ ଆଉ କୋକି—ଏଇ ତିନିଙ୍କୁ ଡକାଗଲା ନାହିଁ । କାରଣ ସେମାନେ ମଢ଼ ଖା'ନ୍ତି ଆଉ ସେମାନଙ୍କ ଦେହରୁ ଦୁର୍ଗନ୍ଧ ବାହାରେ । ଏ ଖବର ପାଇ ତିନିଜଣ ଯାକ ଖୁବ୍ ମନ ଦୁଃଖ କଲେ । କୋକି ରାଗିଯାଇ କହିଲା—ଡକା ହେଉ ନ ହେଉ ମୁଁ ନିଶ୍ଚେ ଯିବି । ମୋର କିଏ କ'ଣ କରିବ ଦେଖିବି । ବିଲୁଆ ତ ଭାରି ଛଉକା । ସେ କହିଲା—ଏ ସଭାକୁ ମୁଁ ପୂରା ଭଣ୍ଡୁର କରିଦେବି । ଗଧିଆ ରାଗରେ ଜଳିଗଲା । ସେ ଠିକ୍ କଲା—ସମସ୍ତଙ୍କୁ ଠକି ଦେଇ ସେ ସଭାକୁ ଯିବ ଆଉ ସିଂହ ଓ ତାର ପ୍ରଜାମାନେ କିପରି ବୋକା ତାହା ଦେଖାଇ ଦେବ । ସେ ନାନା ଉପାୟ ଖୋଜିଲା ।

ଦିନେ ଗଧିଆ ଗୋଟିଏ ମଇଁଷି ଚମଡ଼ା ପାଇଲା । ଗଧିଆର ଆନନ୍ଦ କହିଲେ ନ ସରେ । ସେ ଠିକ୍ କରିନେଲା ଯେ ସେଇ ଚମଡ଼ାଟା ପିନ୍ଧି ସେ ସଭାକୁ ଯିବ । ସମସ୍ତେ ତାକୁ ମଇଁଷିଟିଏ ବୋଲି ଭାବିବେ ।

ଚମଡ଼ାଟାରେ ସେ ନିଜ ଦେହଟାକୁ ଘୋଡ଼ାଇ ଦେଲା । ତା' ଦେହକୁ ସେଇଟା ହୁଗୁଳା ହେବାରୁ ସେ ଗୋଟିଏ ବୁଢ଼ା ମଇଁଷି ପରି ଦେଖାଗଲା । ତା'ର ସେଥିକି ଖାତିର ନ ଥାଏ । ସେ ମଇଁଷିଟିପରି ସବୁ ଅଭିନୟ କଲା । ଗୋଡ଼ ବାଡ଼େଇଲା । ତଳକୁ ମୁହଁକରି ଶିଙ୍ଗ ହଲାଇଲା । ଖୁରାରେ ଭୂଇଁ ତାଡ଼ିଲା । ପାଣିରେ ପଶି ବହୁସମୟ ପାଇଁ ପଡ଼ି ରହିଲା ।



ସଭା ଆରମ୍ଭ ହେଲା । କାମ ଚାଲିଲା । ପଶୁମାନେ ଆସି ଜମା ହେଲେ । ଗଧିଆ ବି ତା' ନୂଆବେଶରେ ସଭାକୁ ଯାଉଥିଲା । ଏହି ସମୟରେ ସିଂହ ଖାଇବା ଜନ୍ତୁଙ୍କ ଲାଗି ମାଂସ ଆଣିବାକୁ ଚିତାବାଘ ଆଉ କଲରାପତ୍ରିଆ ବାଘକୁ ପଠାଇଲା । ସେ କହିଥିଲା ଯେ, କେବଳ ବୁଢ଼ା ଆଉ ଅଚଳ ହୋଇ ଯାଇଥିବା ଜନ୍ତୁକୁ ମାରିବ । ସୁସ୍ଥସବଳ ଜନ୍ତୁକୁ ମାରିବାକୁ ହେବ ନାହିଁ ।

ବାଟରେ ଚିତାବାଘ ଦେଖିଲା, ମଇଁଷି ଚମଡ଼ା ପିନ୍ଧିଥିବା ଗଧିଆ ଧୀରେ ଧୀରେ ଚାଲିଛି । ତାକୁ ଗୋଟିଏ ବୁଢ଼ା ମଇଁଷି ଭାବି ସେ ତାର ସାଙ୍ଗ ବାଘକୁ ଡାକି କହିଲା—ଆରେ ଦେଖ, ଦେଖ । ଏ ଆଡ଼କୁ ଗୋଟିଏ ବୁଢ଼ା ମଇଁଷି ଆସୁଛି । ସେ କେତେ କଷ୍ଟରେ ଚାଲୁଛି । ଅତି ବୁଢ଼ା । ଖାଇବାକୁ ପାଉନି । ଚାଲ ତାକୁ ମାରି ତାର ମାଂସ ନେବା । ସେ ବିଚରା କେତେ କଷ୍ଟରୁ ରକ୍ଷା ପାଇଯିବ ।

ଦୁଇଟି ଯାକ ବାଘ ମଇଁଷି ଉପରେ ଚଢ଼ାଉ କଲେ । ସେମାନଙ୍କ ଚଢ଼ାଉରେ ଉପର ଚମଡ଼ାଟା ଖସି ପଡ଼ିଲା । ସେମାନେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଜୀବଟି ମଇଁଷି ନୁହେଁ— ମଇଁଷି ଚମଡ଼ା ପିନ୍ଧିଥିବା ଗୋଟିଏ ଗଧିଆ । ବାଘ ଦୁହିଁଙ୍କର ଦାନ୍ତୁଆନଖ ବାଜି ଗଧିଆ ଖଣ୍ଡିଆ ଖାଂବରା ଆଉ ରକ୍ତ ସ୍ନାନ । ସେ ବା କାହାକୁ କହିବ ? ଲାଜର କଥା । ନିଜ ଅର୍ଜିଲା ଫଳ । ଚୁପ ହୋଇ ନିଜ ଜାଗାକୁ ପଳାଇଲା ।

ବାଘ ଦୁହେଁ ବି ଡାଟକା । ତେବେ ସେମାନେ ଗୋଟିଏ ବୁଢ଼ା ଗୟଳକୁ ମାରି ତା'ରି ମାଂସ ନେଇ ସଭାକୁ ଫେରିଲେ । ସମସ୍ତଙ୍କୁ ଗଧିଆର ମଇଁଷି ବେଶ କଥା କହିଲେ । ସେକଥା ଶୁଣି ସମସ୍ତେ ଖାଲି ହସିଲେ ।

ସେଦିନଠାରୁ ଗଧିଆ ଏକୁଟିଆ ଲାଜରେ ବୁଲେ, କେଉଁ ସାଙ୍ଗ-ମେଳକୁ ଯାଏ ନାହିଁ ।



# ହାତୀର ଜାତିଭାଇ

ଫୁଲବାଣୀର ଅଗନାଅଗନି ବନସ୍ତ । ଆଗେ ସେଠାରେ ଦଳ ଦଳ ହାତୀ ବୁଲୁଥିଲେ । ଗୋଟିଏ ଦନ୍ତାହାତୀ ବୁଢ଼ା ହୋଇଯିବାରୁ ଦଳଛାଡ଼ି ଏକୁଟିଆ ବୁଲୁଥିଲା । ଥରେ ସେ ଗୋଟିଏ ଶାଳଗଛକୁ ଆଉଜି ଘୁମାଉଥିଲା । କେତେ ସମୟ ପରେ ତାକୁ ନିଦ ଲାଗିଗଲା । ନିଦରେ ସେ ଗୋଟିଏ ସ୍ୱପ୍ନ ଦେଖିଲା ।

ସେ ଦେଖିଲା ଯେ ସେଇ ଜଙ୍ଗଲ ଛାଡ଼ି ସେ କାହିଁ କେତେ ଦୂରକୁ ଚାଲିଯାଇଛି । ସେଠି ଏତେ ବଡ଼ ବଡ଼ ଗଛଲତା ନାହିଁ । ଚାରିଆଡ଼େ ଖାଲି ସନ୍ତସନ୍ତିଆ ପାଣି । ଛୋଟ ଛୋଟ ଗଛଲତା ଆଉ ବଦୁବୁଦୁକିଆ ଜଙ୍ଗଲ । ଠାଏ ଠାଏ ଘାସପଡ଼ିଆ । ହେମାଳ ପବନ ତୁହାକୁ ତୁହା ବହୁଛି । ଦୂରରେ ଧୂସର ରଙ୍ଗର ପାହାଡ଼ ଠିଆ ହୋଇଛି । ଆରେ, ତା ଆଡ଼କୁ ସେଇ ପାହାଡ଼ଟି କ'ଣ ଘୁଞ୍ଚି ଘୁଞ୍ଚି ଆସୁଛି । ତେବେ ସେଇଟା କ'ଣ ପାହାଡ଼ ନୁହେଁ ? ଗୋଟିଏ ମସ୍ତବଡ଼ ଜନ୍ତୁ ତା ଆଗରେ ଠିଆ ହୋଇଗଲା । ତାର ଦେହଯାକ ଭାଲୁ ଦେହ ପରି ଲୋମ, ଦାନ୍ତ ଦୁଇଟି ଛୋଟ । ହାତୀ ସେଇ ଜନ୍ତୁକୁ ପଚାରିଲା—କିଓ ଭାଇ, ତମକୁ ତ ମୁଁ କେବେ କେଉଁଠି ଦେଖି ନ ଥିଲି ? ତୁମେ କିଏ ?

ନୂଆ ଜନ୍ତୁଟି ମୁରୁକି ହସି କହିଲା—ମୁଁ କିଏ କହିଲେ ତୁମେ କ'ଣ ଜାଣିପାରିବ ? ମୁଁ ତୁମ ଜାତିଭାଇ । ହେଲେ ଆମେ ଆଉ ବଞ୍ଚି

କରି ନାହୁଁ । କେବଳ ମଣିଷ ଆମ ହାଡ଼ସବୁ ଗୋଟାଇ କରି ଯାଦୁଘରେ ସଜାଇ ରଖିଛି ।

ହାତୀଟି ଆଶ୍ଚର୍ଯ୍ୟ ହୋଇ କହିଲା—ତମ ଦେହରେ ଏତେ ଲୋମ ! କେଡ଼େ ଲମ୍ବାଲମ୍ବା ଆଉ ବହଳ ସେଗୁଡ଼ାକ !

ନୂଆ ଜନ୍ତୁଟି କହିଲା—ଆମେ ଯେଉଁ କାଳରେ ଥିଲୁ, ସେତେ-ବେଳେ ଚାରିଆଡ଼ ଥଣ୍ଡା—ବରଫ ! ଶୀତରେ ଦେହମୁଣ୍ଡ ଥରି



ଯାଉଥିଲା । ବାପ୍‌ରେ ବାପ୍ । କି ହେମାଳ ! ସେକଥା ମନେ ପଡ଼ିଲେ ମୋ ଛାତିରେ ଛନକା ପଶି ଯାଉଛି ! ସେଥିପାଇଁ ଆମ ଦେହରେ ଏତେ ବହଳିଆ ଆଉ ଲମ୍ବା ଲୋମ !

ହାତୀ ଏବେ ଚିନ୍ତାରେ ପଡ଼ିଗଲା ପରି କହିଲା—ତୁମର ବଂଶ ବୁଡ଼ିଗଲା କିପରି ? କ'ଣ କିଏ ମାରିଦେଲା ?

ନୂଆ ଜନ୍ତୁଟି ମନ ଦୁଃଖରେ ଉତ୍ତର ଦେଲା—ସେକଥା କ'ଣ କହିବି ଭାଇ ? ଆଗରୁ ଆଦିମ ମଣିଷମାନେ ଆମଭିତରୁ ଅନେକଙ୍କୁ ପଥର ଫିଙ୍ଗି ଫିଙ୍ଗି ମାରି ପକାଉଥିଲେ । ବାକୀ ଯେଉଁମାନେ ବଞ୍ଚୁଥିଲେ, ଉତ୍ତରରୁ ବରଫ ସୁଅ ମାଡ଼ି ଆସିବା ଫଳରେ ସେମାନେ ପୋତି ହୋଇ ମଲେ । ପଳାଇ ପାରିଲେ ନାହିଁ । ଆମର କେଡ଼େ ବଡ଼ ଚେହେରା ଦେଖୁଛ ତ ?

ହାତୀ ହସି ହସି କହିଲା—ହଇଏ, ଖାଲି ତୁମର ଚେହେରା ଦେଖାଉଛ ନା କଳବଳ କିଛି ଅଛି ? ଟେକାପଥର ଫିଙ୍ଗି ମଣିଷ ପୁଣି ତୁମକୁ ମାରୁଥିଲା ? ତୁମେ ସବୁ କିଛି କରିପାରିବ ନାହିଁ ? ହାଃ... ହାଃ... ହାଃ... ହିଁ ହିଁ ହିଁ !

ନୂଆ ଜନ୍ତୁଟି ପାଟିମେଲାଇ ଜୋରରେ କହିଲା—ଆରେ ଭାଇ, ମଣିଷ ଭାରି ବୁଦ୍ଧିଆ । ଆମଠାରୁ ଚେହେରାରେ ସେ ସାନ ହେଲେ କ'ଣ ହେଲା, ବୁଦ୍ଧି ତାର ଭାରି ବଡ଼ ! ସେତେବେଳେ ପୁଣି ସେଇ ମଣିଷମାନଙ୍କର ବେଶୀ କିଛି ହାତ ହତିଆର ନ ଥିଲା ।

ହାତୀ ଚିନ୍ତିତ ହୋଇ କହିଲା—ମଣିଷ ଖାଲି ଟେକା ପଥର ପକାଇ ତୁମ୍ଭମାନଙ୍କୁ ମାରି ଦେଲା ନା ସେ ଆଉ କ'ଣ ଫନ୍ଦିଫିକର କରିଥିବ !

ସେଇ ଜନ୍ତୁଟି ଉତ୍ତର ଦେଲା—ହଁ, ସେମାନେ ଆମକୁ ମାରି ଖାଇବାକୁ କେତେ ଫନ୍ଦି କଲେ । ସେମାନେ ଆମର ଯିବା ଆସିବା ବାଟରେ ବଡ଼ ବଡ଼ ଗାତ ଖୋଳି ତା ଉପରେ ଗଛ, ଡାଳ, ପତ୍ର, ଘାସ ବିଛାଇ ଦେଉଥିଲେ । ଆମେ ତ ଜାଣି ପାରୁ ନ ଥିଲୁ; ତା'ଉପରେ

ଗୋଡ଼ ପକାଇ ଦେଲାମାତ୍ରେ ସେହି ଗାତରେ ଗଳି ପଡୁଥିଲୁ । ସେତେବେଳେ ଆମେ ମାସ ମାସ ଧରି ସେଇଠାରେ ପଡ଼ିରହୁଥିଲୁ । ମଣିଷମାନେ ଟେକାପଥର ଫିଙ୍ଗି ଫିଙ୍ଗି ଆମକୁ ମାରିଦେଉଥିଲେ । ମଲେ ସେମାନେ ଆମର ମାଂସ ଖାଇ ବଞ୍ଚି ଯାଉଥିଲେ । ତୁମେ ସବୁ ଏବେ କିପରି ଚଳୁଛ କହିଲ ?

ହାତୀ କହିଲା—ସେ କଥା ଆଉ କ'ଣ କହିବି ଭାଇ ? ସେଇ ମଣିଷଗୁଡ଼ାକ ଆମ ଭିତରୁ ବହୁ ଜନ୍ତୁକୁ ଧରିନେଇ କାଠ ବୋହିବା, ପଥର ବୋହିବା ଆଦି କାମରେ ଲଗାଇଛନ୍ତି । ଯେଉଁ କେତେଜଣ ମଣିଷ ହାବୁଡ଼ରୁ ଖସି ଯାଇଛୁ, ଜଙ୍ଗଲରେ ବୁଲି ବୁଲି ଦିନ କାଳ ଯାଉଛି । ବଡ଼ କଷ୍ଟରେ ଚଳୁଛି ।

ଏଇ ସମୟରେ ଜଣେ ଶିକାରୀ ବନ୍ଧୁକ ଫୁଟାଇବାରୁ ବୁଢ଼ା ହାତୀର ନିଦ ଭାଙ୍ଗିଗଲା । ସେ ଚାରିଆଡ଼କୁ ବଡ଼ ବିକଳରେ ଚାହିଁଲା ।



# କଙ୍କଡ଼ାର ଫିକର

ଦୟା ନଈରେ ଗୋଟିଏ ବୁଢ଼ା କଙ୍କଡ଼ା ରହୁଥିଲା । ଥରେ ଗୋଟିଏ ବିଲୁଆ ସେଇ ନଈକୂଳକୁ ବୁଲି ଆସିଥିଲା । ତାକୁ ଦେଖି କଙ୍କଡ଼ାଟି ପାଣିରୁ ବାହାରି ଆସିଲା । ଡଗଡଗ ହୋଇ ବିଲୁଆ ପାଖକୁ ଗଲା । ବିଲୁଆ କଙ୍କଡ଼ାର ଚାଲିକୁ ଦେଖି ହସି ପକାଇଲା । ତାର ଥଟ୍ଟାରେ କଙ୍କଡ଼ା ଭାରି ରାଗିଗଲା । ସେ ବି ଛାଡ଼ିବା ଜନ୍ତୁ ନୁହେଁ । ସେ ବିଲୁଆକୁ କହିଲା—ଭାଇ, ମୋତେ ଥଟ୍ଟା କରୁଚ କ'ଣ ? ଯେତେ ହସୁଚ ହସ । ହେଲେ ତମର ଚାରିଟା ଗୋଡ଼କୁ ମୋର ଦଶଟି ଗୋଡ଼ । ତମେ କ'ଣ ମୋର ସରି ହୋଇ ପାରିବ ?



କଙ୍କଡ଼ା କଥା ଶୁଣି ବିଲୁଆ ହସି ହସି କହିଲା—ଆଜି ଚାଲ । ଏଇଠୁ ଦୌଡ଼ିବା । ଆଗରେ ଯେଉଁ ବରକୋଳି ଗଛ ଦିଶୁଛି, ସେଠି ଯିଏ ଆଗ ପହଞ୍ଚିବ, ସେଇ ଜିଣିବ । କଙ୍କଡ଼ା ଏଥିରେ ରାଜି ହେଲା ।

ପାଖରେ ଗୋଟିଏ ଆମ୍ବଗଛରେ ଶଙ୍ଖଚିଲଟିଏ ବସା କରିଥିଲା । ଦୁହେଁ ତାକୁ ଦେଖି ଡାକିଲେ, ଭଲଲୋକି କଲେ ।

ଶଙ୍ଖଚିଲ ରାଜି ହେଲା । କହିଲା—ମୁଁ ଏକ, ଦୁଇ, ତିନି କହିବା ମାତ୍ରେ ତୁମେ ଦୁହେଁ ଦୌଡ଼ିବ । ଦୁହେଁ ଏଥିରେ ରାଜି ହେଲେ ।

ଶଙ୍ଖଚିଲ ବଡ଼ ପାଟିରେ ଡାକିଲା—ଏକ, ଦୁଇ, ତିନ୍ । ବିଲୁଆ କୁଆଡ଼କୁ ନ ଚାହିଁ ଦୌଡ଼ିଲା । କଙ୍କଡ଼ା ଆଖି ପିଛୁଳାକେ ବିଲୁଆ ଲାଞ୍ଜକୁ ତା ବୁଢ଼ାଗୋଡ଼ ଦୁଇଟିରେ ଜାବୁଡ଼ି ଧରି ଓହଳି ପଡ଼ିଲା ।

ବରକୋଳି ଗଛ ପାଖରେ ପହଞ୍ଚି ବିଲୁଆ ତାର ଲାଙ୍ଗୁଳକୁ ଝାଡ଼ିଦେଲା । ଲାଙ୍ଗୁଳରୁ ଛିଟିକି କଙ୍କଡ଼ା ଯାଇ ବରକୋଳି ଗଛ ମୂଳରେ ପଡ଼ିଲା । ଶଙ୍ଖଚିଲ ସବୁ ଦେଖି ହସୁଥାଏ । ବିଲୁଆ ନିଜେ ଜିଣିଗଲା ଭାବି ସେ ଭାରି ଖୁସି । କଙ୍କଡ଼ା କେତେ ପଛରେ ଅଛି ଦେଖିବାକୁ ବିଲୁଆ ପଛକୁ ଚାହିଁଲା । ସେତିକିବେଳେ କଙ୍କଡ଼ା ଗୀତ ଲମ୍ଵାଇଲା—
ବିଲୁଆ ନନା, ବିଲୁଆ ନନା— ଆଗରୁ ଆସିଚି ଇଆଡ଼େ ଅନା !

ବିଲୁଆ ଏହା ଶୁଣି ତାଟକା । କଙ୍କଡ଼ାକୁ ବରକୋଳି ଗଛ ମୂଳରେ ଦେଖି ତା ପାଟିରୁ କଥା ବାହାରିଲା ନାହିଁ ।

ଏଣେ ଶଙ୍ଖଚିଲ କଙ୍କଡ଼ାର ଫିକର ଦେଖି ହସୁଥାଏ । କେଉଁ ବାଟରେ କଙ୍କଡ଼ା ଏତେ ଶୀଘ୍ର ଚାଲି ଆସିଲା ବିଲୁଆ ଭାବି ପାରିଲା ନାହିଁ । ଶେଷରେ ସେ ହାରିଗଲା ବୋଲି ମାନିବାକୁ ବାଧ୍ୟ ହେଲା । ହେଲେ ଶଙ୍ଖଚିଲ ତାକୁ ପଛରେ ସବୁକଥା କହିଦେଲା ।

ସେହିଦିନଠାରୁ ବିଲୁଆ କଙ୍କଡ଼ାଗାତରେ ଲାଞ୍ଜ ପୂରାଇ ବସେ । କଙ୍କଡ଼ା ତାକୁ ଆଗପରି ଦୁଇ ବୁଢ଼ାଗୋଡ଼ରେ ଧରିଲା ମାତ୍ରେ ସେ ତା ଲାଞ୍ଜକୁ ବାହାରକୁ ଟାଣି ଆଣି ଛାଟିଦିଏ । ଏମିତି କଙ୍କଡ଼ାକୁ ଶିକାର କରି ବିଲୁଆ ତାର ରାଗ ସୁଝେ ।



# ଭାଲୁର ବୋକାମି

ଦିନେ ଗୋଟିଏ ଭାଲୁ ଖଣ୍ଡେ ମୁଣ୍ଡା ମାଂସ ପାଇଲା । ତା'ମନ ବଡ଼ ଖୁସି ହୋଇଗଲା । ସେ ମାଂସ ଖଣ୍ଡକରୁ ପେଟ ପୂରା ଯାହା ଖାଇଲା, ଆଉ ଯାହା ବଳିଲା ନିଜ କୋଳରେ ରଖି ଶୋଇ ପଡ଼ିଲା । ଗୋଟିଏ କାଉ ମାଂସ ଖଣ୍ଡକୁ ଦେଖି ଖାଇବାକୁ ମନ କଲା । ଭାଲୁ ଗାଢ଼ ନିଦରେ ଶୋଇ ଘୁଙ୍ଗୁଡ଼ି ମାରୁଥିଲା । ତେଣୁ ମନ ମଉଜରେ କାଉ ସେଇ ମାଂସ ଖଣ୍ଡକରୁ ଖାଇବାରେ ଲାଗିଲା ।

ହଠାତ୍ ଭାଲୁର ନିଦ ଭାଙ୍ଗିଗଲା । ସେ ତାର ମାଂସରୁ କାଉ ଖାଉଥିବା ଦେଖି ନିଜ ଆଗ ଗୋଡ଼ ଦୁଇଟିରେ ତାକୁ ମାଡ଼ିବସିଲା । ରାଗିଯାଇ କହିଲା—ପାଜି, ତୋତେ ମୁଁ ଖାଇବି ଆଜି ।

କାଉ ଡରିଯାଇ କହିଲା—ଭାଇ, ଏଇ ଥରକ ଛାଡ଼ିଦିଅ; ଆଉ କେବେ ମୁଁ ଏମିତି ଭୁଲ୍ କରିବି ନାହିଁ ।

ଭାଲୁ ଘୁଡୁ ଘୁଡୁ ହୋଇ କହିଲା—ରଖ ରଖ ତୋ କଥା । କେତେଥର ତୁ ମୋତେ ଠକିଲୁଣି । ବଦମାସ୍, ଏଇଥର ତୁ ହେବୁ ଶେଷ । ତୋତେ ମାରିଲେ ମୁଁ ହେବି ତୋଷ । ତୋ ଜାତିଭାଇଙ୍କୁ ତୁ ଡାକ । ସେମାନଙ୍କ ଆଗରେ ତୋତେ ପାନେ ଦେବି । ସମସ୍ତେ ଶିକ୍ଷା ପାଇବେ ।

କାଉ କୁନ୍ଥାଇ କୁନ୍ଥାଇ କହିଲା—ତୁମେ ତ ମୋତେ ଏତେ ଜୋର୍‌ରେ ମାଡ଼ି ବସିଛ, ମୁଁ ଡାକିବି କେମିତି ? ନ ଡାକିଲେ ଜାତିଭାଇ ଆସିବେ କିମିତି ? ଭାଲୁ କାଉ ଉପରୁ ନିଜ ଦେହର ଭାରକୁ ଟିକିଏ



କୋହଳ କରିଦେଲା । କାଉ ବିକଳ ହୋଇ 'କା' 'କା' କରିବାରୁ ବହୁତ କାଉ ସେଠାକୁ ଉଡ଼ି ଆସିଲେ । ସେମାନଙ୍କୁ ଭାଲୁ କହିଲା—ଦେଖ, ତମ ଜାତିର ଜଣେ ଚୋରକୁ ମୁଁ ଧରିଛି । ତାକୁ ମୁଁ ମାରିବି । ତମ ସମସ୍ତଙ୍କ ଆଗେ ମାରିଲେ ତମେ ସବୁ ଶିଖିବ । ଆଉ ଚୋରି କରିବ ନାହିଁ । ଜାଣିଲ ?

ଗୋଟିଏ ବୁଢ଼ା କାଉ କହିଲା—ହଉ, ମାରିବ ତ ମାର । କିନ୍ତୁ ଏମିତି ମାର ଯେମିତି ତାକୁ ସମସ୍ତେ ଦେଖି ପାରିବେ । ଏଇ ପାହାଡ଼ ଉପରକୁ ଯା'କୁ ନେଇଯାଅ । ସେଇଠୁ ପାହାଡ଼ ତଳକୁ ତାକୁ ଫିଙ୍ଗିଦିଅ ।

ତଳେ ପଡ଼ିଲେ କି ସେ ଆଉ ବଞ୍ଚିବ ? ତାକୁ ଠିକ୍ ଶାସ୍ତି ହେବ । ଏଥିରୁ ସବୁ ଜୀବଜନ୍ତୁ ଉଚିତ୍ ଶିକ୍ଷା ପାଇବେ ।

କଥାଟା ଭାଲୁ ମନକୁ ପାଇଲା । ସେ କାଉକୁ ଧରି ପାହାଡ଼ ଉପରକୁ ଚଢ଼ିଲା । ସବା ଉପରକୁ ଯାଇ କାଉକୁ ବଡ଼ ଜୋରରେ ତଳକୁ ଫିଙ୍ଗି ଦେଲା । ସେ କିମିତି ମରିବ ଦେଖିବାକୁ ଭାଲୁ ତଳକୁ ଚାହିଁଲା, କିନ୍ତୁ କାଉ କା—କା କରି ଉଡ଼ିଗଲା । ଆଉ ସବୁ କାଉ ଠୋ ଠୋ ହସି ଉଠିଲେ ।

ତାକୁ ଧରିବାକୁ ଆଗ ଦୁଇଗୋଡ଼ ଟେକି ଭାଲୁ ଗୋଡ଼ାଇଲା ବେଳକୁ ପାହାଡ଼ ତଳକୁ ସେ ଭୁସ୍‌କରି ଖସି ପଡ଼ିଲା । ତାର ଦେହ ସାରା ଖଣ୍ଡିଆ ଖାବରା ହୋଇଗଲା ।

କାଉମାନେ ନିଜ ନିଜ ବାଟରେ ଉଡ଼ିଗଲେ । ଭାଲୁ ଏତେ ଲାଜ ପାଇଲା ଯେ ଅନେକ ଦିନଯାଏ ସେ ନିଜ କୋରଡ଼ ଛାଡ଼ି ବାହାରକୁ ଆସିଲା ନାହିଁ ।

ଏବେ ମଧ୍ୟ କାଉମାନଙ୍କ ଭୟରେ ସେ ଦିନସାରା କୁଆଡ଼େ ଯାଏ ନାହିଁ । କାଳେ କାଉମାନେ ତାକୁ ଦେଖି ଥଟ୍ଟା କରିବେ ! କାଳେ ସେମାନେ ହସି ଦେବେ !



# ହନୁମାଙ୍କଡ଼ଙ୍କ ବଗିଚା କାମ

ବଣର ବାଘ ରାଜା ଥରେ ଗୋଟିଏ ବଗିଚା ଆରମ୍ଭ କଲା । ସେ ସମ୍ବରକୁ ମାଳୀସର୍ଦ୍ଦାର କାମରେ ରଖିଲା । ବୁଢ଼ା ହେବାରୁ ସମ୍ବର ଆଉ ଏକୁଟିଆ କାମକୁ ପାରିଲା ନାହିଁ । ତେଣୁ ଆଉ ଦି'ଜଣ ସହକାରୀ ମାଳୀ ରଖିବେ ବୋଲି ଚାରିଆଡ଼େ ଡେଙ୍ଗୁରା ବଜାଇ ଜଣାଇ ଦିଆଗଲା ।

ଯେଉଁଦିନ ମାଳୀ କାମପାଇଁ ପଶୁମାନଙ୍କୁ ବାଛିବା କଥା, ସେଇଦିନ ପଶୁମାନେ ସବୁଆଡୁ ଆସି ଜମା ହୋଇଗଲେ । ସେମାନଙ୍କ ଭିତରେ ହନୁ ଓ ମନୁ ନାମକ ଦୁଇଟି ମାଙ୍କଡ଼ ଥିଲେ ।

ସମ୍ବର ସେମାନଙ୍କୁ ପଚାରିଲା—ଆଚ୍ଛା, ତୁମେ ତ ମାଳୀ କାମ କରିବାକୁ ଆସିଛ, ବଗିଚା କାମ କଣ କରିପାରିବ ?

ହନୁ କହିଲା—ବଗିଚା କାମ ଆମେ ଜାଣିନୁ ତ ଜାଣିଚି କିଏ ? ଆମେ ପରା ପନିପରିବା, ଫଳମୂଳ ଖାଇ ବଞ୍ଚିଚୁ ! ଆମଠୁଁ ଆଉ ଅଧିକ ବଗିଚା କାମ କିଏ ଜାଣିଚି ?

ମନୁ ଜୋର ଦେଇ କହିଲା—ଆମ ଦୁହିଁଙ୍କୁ ରଖ । ରଜାଘର ବଗିଚାକୁ ଲଙ୍କାର ଅଶୋକ ବନ କରିଦେବୁ ।

ସମ୍ବର ସେମାନଙ୍କୁ କାମରେ ନିଯୁକ୍ତ କଲା । କାମରେ ରହିବା ପରେ ସମ୍ବର ସେମାନଙ୍କୁ କେତୋଟି ଫଳ ଗଛ ଲଗାଇବାକୁ ଦେଲା ।

ଗଛ ଲାଗିବା ପରେ ସାତ ଦିନଯାଏ ବର୍ଷା ହେଲା । ହନୁ—ମନୁଙ୍କୁ ଆଉ ପାଣି ଦେବାକୁ ପଡ଼ିଲା ନାହିଁ । ସେମାନେ ବଗିଚାର ଫଳମୂଳ ଖାଇ ଗଛଗୁଡ଼ିକର ଏ ଡାଳରୁ ସେ ଡାଳକୁ ଡେଇଁ ଡେଇଁ ସମୟ କଟାଇଲେ । ବର୍ଷା ଛାଡ଼ିଗଲା ପରେ ପାଣି ଅଭାବରୁ ଗଛଗୁଡ଼ିକ ଝାଉଁଳି ପଡ଼ିଲା ।

ହନୁ କହିଲା—ମନୁଭାଇ, ଏ ଗଛଗୁଡ଼ିକ ଝାଉଁଳିଲା କାହିଁକି ? କ'ଣ ଅସୁବିଧା ହେଲାକି ?

ମନୁ କହିଲା—ଏ ମାଟିଟା ପରା ଭଲ ନୁହେଁ ।

ହନୁ କହିଲା—ସେକଥା ଯାହାହେଉ, ଏବେ କରିବା କ'ଣ ?



ମନୁ କହିଲା—ଆଉ କ'ଣ କରିବା ? କୂଅରୁ କାଢ଼ି ଆମେ ପାଣି ଦେବା ? ପୋଖରୀଟିଏ ତ ନାହିଁ । ଏତେ ଗହୀର କୂଅରୁ ପାଣି କାଢ଼ି ଗଛ ବଞ୍ଚାଇବ କିଏ ? ଏ କାମ ଆମକୁ ପୋଷାଇବ ନାହିଁ ।

ହନୁ ପଚାରିଲା—ତେବେ କିମିତି କ'ଣ କରିବା ?

ମନୁ କହିଲା—ଆଉ କ'ଣ କରିବା ? ଗଛଗୁଡ଼ିକୁ ଯେ କୌଣସିମତେ ବଞ୍ଚାଇବାକୁ ହେବ । ଗଛ ମଲେ ଚାକିରି ଯିବ । ଚାକିରି ଗଲେ ଏମିତି ବି ଯିବ । ଏବେ ଚାଲ ପ୍ରତି ଗଛରେ ଅଧ ବାଲ୍‌ଟିଏ କରି ପାଣି ଦେବା ।

ହନୁ କହିଲା—ସେତିକି ପାଣିରେ କ'ଣ ହେବ ? ଗଛ ବଞ୍ଚିବ ତ ?

ମନୁ ଉତ୍ତର ଦେଲା—ହବନି କାହିଁକି ? ପରୀକ୍ଷା କରିବା, ଦେଖିବା ।

ହନୁ ପଚାରିଲା—ଆମେ କ'ଣ ପରୀକ୍ଷା କରିବା ?

ମନୁ କହିଲା—ଦେଖ, ଗଛଗୁଡ଼ିକ ସାନ ସାନ । ପ୍ରଥମେ ସେଗୁଡ଼ିକ ଉପାଡ଼ି ଚେର ଗୁଡ଼ିକ ମାପିବା । ଅଧବାଲ୍‌ଟି ଲେଖାଁ ପାଣିଦେବା । ଦୁଇ ଦିନ ପରେ ତାକୁ ଉପାଡ଼ି ଦେଖିବା ଚେର କେତେ ବଢ଼ିଛି ? ଯଦି ଚେର ବଢ଼ିଥିବ, ସେତିକି ଲେଖାଁ ପାଣିଦେବା । ଯଦି ବଢ଼ି ନ ଥିବ ଅଧିକ ପାଣି ଦେବା ।

ହନୁ କହିଲା—ଠିକ୍ ଠିକ୍ । ସେମିତି କରିବା ।

ଦୁହେଁ ଏପରି ଥରକୁ ଥର ଉପାଡ଼ିବାରୁ ଗଛଗୁଡ଼ିକ ଶୁଖିଗଲା । ଦିନେ ସମର ସର୍ଦ୍ଦାର ବଗିଚାକୁ ଆସି ଗଛଗୁଡ଼ିକୁ ଦେଖିଲା । ଶୁଖିଯିବାର କାରଣ ପଚାରିବାରୁ ସେମାନେ କହିଲେ— ଆମେ କ'ଣ କରିବୁ ? ମାଟି ଖରାପ, ଚାରାଗୁଡ଼ିକ ଭଲ ନୁହେଁ । ତେଣୁ ଏପରି ହେଲା । ସେମାନଙ୍କର ଏତେ ପରିଶ୍ରମ ବୃଥା ହେଲା ।

ସମ୍ବର ପଚାରିଲା—ତୁମେ କିପରି ପାଣି ଦେଉଚ କହିଲ ? ହନୁ ଓ ମନୁ ଦୁହେଁ ଯାହା କରିଥିଲେ, ତାହା କହିଲେ ।

ସମ୍ବର ରାଗିଯାଇ ସେମାନଙ୍କୁ ମାରି ଗୋଡ଼ାଇଲା । ଦୁହେଁ ପ୍ରାଣଭୟରେ ଗଛ ଉପରକୁ ଡେଇଁ ପଳାଇଲେ ।

ସେଦିନଠାରୁ ସମ୍ବର ଆଉ ମାଙ୍କଡ଼ଙ୍କ ଭିତରେ ଭଲ ପଡୁନାହିଁ । କେଉଁଠି କେବେ ଦେଖାହେଲେ ସେମାନେ ରାଗି ଉଠନ୍ତି ।



# ଶୁଆର ଦୁଃଖ

ଆଗେ ମହାନଦୀର ସାତକୋଶିଆ ଗଣ୍ଡ ପାଖରେ ଘୋର ଜଙ୍ଗଲ ଥିଲା । ସେଥିରେ କେତେ ଜାଗାରେ ମଣିଷପାଦ ବି ପଡ଼ି ନ ଥିଲା । ସେଇ ବଣରେ ହାତୀ, ସିଂହ, ଗଣ୍ଡା, ହରିଣ, କଣ୍ଟିଆବଗ, କୁମ୍ଭୀର ପ୍ରଭୃତି କେତେପ୍ରକାର ପଶୁପକ୍ଷୀ ରହୁଥିଲେ । ସେମାନେ କେବେ ମଣିଷ ଦେଖି ନ ଥିଲେ ।

ସେ ବଣଠାରୁ ବହୁ ଦୂରରେ ଗୋଟିଏ ଗାଁ ଥିଲା । ସେଠି ଜଣେ ଲୋକ ଗୋଟିଏ ଶୁଆ ପୋଷିଥିଲେ । ଥରେ ଶୁଆଟି ପଞ୍ଜୁରୀରୁ ଉଡ଼ିଗଲା । ସେ ମନ ଖୁସିରେ ଉଡ଼ିଉଡ଼ି ବଣ ଭିତରକୁ ଚାଲିଗଲା ।

ସେଠାରେ ସେ ତାର ପାଖପଡ଼ିଶା ପଶୁପକ୍ଷୀମାନଙ୍କୁ ମଣିଷ କଥା ବହୁତ କରି କହିଲା । ସେଠି କୌଣସି ଜୀବ ଆଗରୁ ମଣିଷ କଥା କିଛି ଜାଣି ନ ଥିଲେ । ତେଣୁ ଶୁଆଠାରୁ ସେକଥା ଜାଣିବାପାଇଁ ବହୁ ଜୀବଜନ୍ତୁ ରୁଣ୍ଡ ହେଲେ ।

ଶୁଆ କହିବାରେ ଲାଗିଲା—ମଣିଷ ବଡ଼ ବୁଦ୍ଧିଆ । ତାକୁ ଖୁବ୍ କଳ—କୌଶଳ ଜଣା ! କେତେବେଳେ କ'ଣ କରିବାକୁ ହେବ, ସେ ଠିକ୍ କରେ । ସେ ବଡ଼ ବଡ଼ ଘର ଭିତରେ ରହେ । ତେଣୁ କି ଖରା, କି ବର୍ଷା, କି ଶୀତ, କି ବତାସ, ସେ କାହାକୁ ଡରେ ନାହିଁ । ସେ ବେଶୀ ଚାଲେ ନାହିଁ । ମୋଟେ ଉଡ଼ିପାରେ ନାହିଁ । ଗାଡ଼ି ମଟରରେ ସେ ଯିବା ଆସିବା କରେ । ହାତୀ, ଘୋଡ଼ା, ମଇଁଷି, ବଳଦ, କୁକୁର ତାକୁ ଭାରି

ମାନନ୍ତି । ସିଂହ, ବାଘ, ସାପ, ଭାଲୁ ପ୍ରଭୃତି ମାରଣା ଜନ୍ତୁମାନଙ୍କୁ ବି ଡରାଏ, ଖେଳାଏ ଆଉ ସହଜରେ ମାରିପାରେ । ସେମାନେ ବି ମଣିଷର ବୋଲ ମାନନ୍ତି ।

ହାତୀ ପଚାରିଲା—ଆଚ୍ଛା, ତୁମେ କହୁଚ ମଣିଷକୁ ହାତୀ ଭାରି ମାନେ । କହିଲ ଦେଖି, ମଣିଷର ମୁଣ୍ଡ ଓ ଥୋଡ଼ପାହାଡ଼ କ'ଣ ମୋର ମୁଣ୍ଡ ଆଉ ଥୋଡ଼ପାହାଡ଼ଠାରୁ ବଡ଼ ? ତାର ଦାନ୍ତ କେତୋଟି ? ମୋ ଦାନ୍ତଠାରୁ କ'ଣ ବଡ଼ ?

ସିଂହ ପଚାରିଲା—ମଣିଷ କ'ଣ ଆମକୁ ଡରାଇଦିଏ ? ସେ କ'ଣ ଗୋଟିଏ ଚାପୁଡ଼ାରେ ଅରଣା ମଇଁଷିର ପିଠି ଭାଙ୍ଗି ଦେଇପାରେ ?



ଗଣ୍ଡା ପଚାରିଲା—ତା' ନାକରେ ଥିବା ଶିଙ୍ଗଟା କ'ଣ ମୋ ଶିଙ୍ଗଠାରୁ ବଡ଼ ?

ମିରିଗ ପଚାରିଲା—ତା ଶିଙ୍ଗଗୁଡ଼ାକ ମୋ ଶିଙ୍ଗଠାରୁ ବଡ଼ ତ !

କାଣ୍ଡିଆ ବଗ ପଚାରିଲା—ମଣିଷର ଥଣ୍ଟ, ମୋ ଥଣ୍ଟଠାରୁ ଲମ୍ବ ତ ?

ଶୁଆ ବିଚରା ଏସବୁ ପ୍ରଶ୍ନ ଶୁଣି ତଟସ୍ଥ ! କ'ଣ ବା ସେ କହିବ ? ସେ ପୁଣି କହିଲା—ମଣିଷ ଖୁବ୍ ବୁଦ୍ଧିଆ ! ଭାରି ବଳୁଆ । ହେଲେ ବି ତାର ଲମ୍ୱା ଦାନ୍ତ ଥୋଡ଼ପାହାଡ଼, ଥଣ୍ଟ ଓ ଶିଙ୍ଗ କିଛି ନାହିଁ । ସେ ଗୋଟାଏ ଅରଣା ମଇଁଷି ପିଠିରେ ଚାପୁଡ଼ାଏ ମାରିଲେ ବି ମଇଁଷି ଜାଣି ପାରିବ ନାହିଁ !

ଏକଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ସେମାନେ କହିଲେ— ଏ କିମିତି କଥା ? ଯେଉଁ ଜନ୍ତୁର ଶିଙ୍ଗ ନାହିଁ କି ଥଣ୍ଟ ନାହିଁ, ବଡ଼ ଦାନ୍ତ ନାହିଁ କି ଲମ୍ୱା ବେକ ନାହିଁ, ତାର ପୁଣି ବଳ କିମିତି ଏତେ ବେଶୀ ? ଶୁଆ ନିଶ୍ଚୟ ମିଛ କହୁଛି ! ଏମିତି ଜନ୍ତୁ ତ ଆମେ କେବେ ଦେଖିନୁ !

ଶୁଆ ପୁଣି କହିଲା—ତୁମେମାନେ ବିଶ୍ୱାସ କର ବା ନକର ମୁଁ ସତ କହୁଚି । ଯାହା ନିଜ ଆଖିରେ ଦେଖିଛି ତାହା କହୁଛି ।

ସମସ୍ତେ ପୁଣି କହି ଉଠିଲେ—ନା ନା ! ତୁମେ ଯାହା କହୁଚ ମିଛ ! ଏମିତି ଜନ୍ତୁ କେହି କେବେ ଦେଖିନି ।

ଶୁଆ ମନ ଦୁଃଖରେ ସେଠାରୁ ଉଡ଼ି ଆସିଲା ତା'ର ପୁରୁଣା ମୁନିବ ଘରକୁ । ସେ ଶୁଆକୁ ଆଦରରେ ରଖିଲେ । ଶୁଆର ବଡ଼ ଦୁଃଖ ରହିଗଲା ଯେ ତାକୁ ସବୁ ଜନ୍ତୁ ମିଛୁଆ କରିଦେଲେ । କେହି ବୁଝିଲେନି ଯେ କିଏ ପ୍ରକୃତରେ ମିଛୁଆ ! ହାୟରେ ଏ ଦୁନିଆ !



# ବିରାଡ଼ିର ଫୁଟାଣି

ଗାଁ ଠାରୁ ଅଳ୍ପ ଦୂରରେ ଗୋଟିଏ ଆମ୍ବ ତୋଟା । ସେଇ ତୋଟାରେ ଗୋଟିଏ ବଡ଼ ପୋଖରୀ । ସେଠାରେ ଦୁଇଟି ବେଙ୍ଗ ରହୁଥିଲେ । ସେମାନେ ଭାରି ସାଙ୍ଗ ! ସେମାନଙ୍କ ଭିତରୁ ଗୋଟିକର ନାଁ କୁନା ଆଉ ଅନ୍ୟଟିର ନାଁ ମୁନା ! ଦିନେ କୁନା ପୋଖରୀ କୂଳରେ ଖରା ପୋଉଁଥାଏ । ମୁନା ତା'ପାଖକୁ ଆସି କହିଲା—ଭାଇ ଚାଲ, ଆର କୂଳକୁ ଯିବା । ସେଠି ଘାସ ବଣରେ କେତେ ପୋକଜୋକ ମିଳିବେ । ଆରାମରେ ଖାଇବା ।

କୁନା କହିଲା—ଭାଇ, ଏବେ ମୁଁ କୁଆଡ଼େ ଯାଇ ପାରିବି ନାହିଁ । ରାଜାଝିଅ ଏଠାକୁ ଆସିବେ । ମୁଁ ତାଙ୍କ ସହିତ କଥା ହେବି ।

ମୁନା ଆଖି ତରାଟି କହିଲା—ଆରେ ସେ ରଜାଝିଅ କିଏ ? ପୁଣି ସେ ଏଠାକୁ ଆସିବେ ତୋ ସଙ୍ଗେ ଗପ କରିବାକୁ ? ହାଃ... ହାଃ...

କୁନା କହିଲା—ଆରେ ମୁଁ କ'ଣ ମିଛ କହୁଛି ? ସେ ମୋତେ ଭାରି ଭଲ ପାଏ । ମୋତେ ନ ଦେଖିଲେ ବାଉଳା ହୁଏ !

ମୁନା ପଚାରିଲା—ତୁ କହିଲୁ ଆଗେ ସେ ଦେଖିବାକୁ କିମିତି ?

କୁନା ମୁହଁ ଉଜ୍ଜ୍ୱଳ କରି କହିଲା—ଦେଖିବାକୁ ସେ ଭାରି ସୁନ୍ଦର ! ଗୋଟିଏ ଚାଉଳରେ ଗଢ଼ା ! ତାଙ୍କ ଦେହଯାକ ତୁଳାପରି ଧଳା ଲୋମ । ମୁହଁଟି ଗୋଲ ଜହ୍ନପରି । ତାଙ୍କର ନଖଗୁଡ଼ିକ ଗୋଜିଆ ଓ

ନାକ ଅଗଟିର ରଙ୍ଗ ଗୋଲାପି । ଦାନ୍ତଗୁଡ଼ିକ ସରୁ ସରୁ, ଡାଳିମ୍ବ ମଞ୍ଜିପରି ସୁନ୍ଦର ।

ମୁନା ଫେଁ କରି ହସି ପକାଇ କହିଲା—ଆରେ ବୋକା, ସେ ଗୋଟିଏ ବିରାଡ଼ି ! ମିଛରେ କାଇଁକି ତୁ ବାଇ ହେଉଚୁ ?

ଏଇ ସମୟରେ ବିରାଡ଼ିକୁ ଆସୁଥିବାର ଦେଖି କୁନା କହିଲା ଆରେ ଚୁପ୍ ହୁଅ । ସେ ଏଣିକି ଆସୁଛି ।

ବିରାଡ଼ି ପୋଖରୀ କୂଳକୁ ଆସି ପାଣିରେ ମୁହଁ ଦେଖିଲା । ସେ ନିଜ ରୂପ ଦେଖି ଭାରି ଖୁସି ହୋଇଗଲା । ସେ ଆଖି ବୁଜି ପଚାରିଲା— ମୋ ପରି ଧଳା ଲୋମ କାହାର ଅଛି ?



କୁନା ଉତ୍ତର ଦେଲା—ନା, କାହାର ନାହିଁ ।

ବିରାଡ଼ି ପୁଣି ଛାତି ଫୁଲାଇ ପଚାରିଲା—ମୋ ନାକଟି ସୁନ୍ଦର ନୁହେଁ ?

କୁନା ତାର ଆଗ ଗୋଡ଼ ଦୁଇଟିକୁ ଯୋଡ଼ି କହିଲା—ତୁମ ନାକଟି କେଡ଼େ ସୁନ୍ଦର ! ସତେ ଆଉ କାହାର ଏମିତି ନାକ ନାହିଁ ।

ବିରାଡ଼ି ପଚାରିଲା—ମୋ ଦାନ୍ତ ପରି ସରୁ ମୁନିଆ ଦାନ୍ତ କାହାର ଅଛି ?

କୁନା କହିଲା—ନାଁ, କାହାର ଏମିତି ଦାନ୍ତ ନାହିଁ ।

ବିରାଡ଼ି ବଡ଼ ଖୁସି ହୋଇ ଚାଲିଗଲା । ସେ ବେଙ୍ଗ ଦୁହିଁଙ୍କୁ ଚାହିଁଲା ନାହିଁ । ମୁନା ଭାରି ରାଗିଗଲା । ସେ କୁନାକୁ କହିଲା—କାଲି ତୋ ରଜାଝିଅ ଆସିଲେ ଯାହା କହିବାକୁ ହେବ ମୁଁ କହିବି । ତୁ କିଛି କହି ପାରିବୁ ନାହିଁ ।

କୁନା ସେଥିରେ ରାଜି ହେଲା । ତା ଆରଦିନ ବିରାଡ଼ି ପୋଖରୀ କୂଳକୁ ଆସିଲା । ସେ ଆଗ ପଚାରିଲା—ମୋ ପରି ଧଳା ଆଉ କିଏ ?

ମୁନା ଉତ୍ତର ଦେଲା—ବଗ ।

ବିରାଡ଼ି ପଚାରିଲା—ମୋ ନାକ କ'ଣ ସୁନ୍ଦର ନୁହେଁ ?

ମୁନା କହିଲା—ନାଁ, ବଡ଼ ଅସୁନ୍ଦର, ଭାରି ଚେପ୍‌ଟା !

ବିରାଡ଼ି—ମୁଁ କ'ଣ ସୁନ୍ଦର ନୁହେଁ ?

ମୁନା—ବଡ଼ ଅସୁନ୍ଦର ।

ବିରାଡ଼ି ରାଗରେ ପଚାରିଲା—ତୁ କିଏ ଏବେ ? କେଉଁଠି ଅଛୁ ?

ମୁନା କହିଲା—ମୁଁ ଗୋଟିଏ ବେଙ୍ଗ । ଏଇ ପୋଖରୀରେ ଅଛି । ବିରାଡ଼ି ରାଗରେ ଗର ଗର ହୋଇ କହିଲା— ''ତୋତେ ଦେଖି ଦେଉଛି ରହ ।'' ଏହା କହି ମୁନା ପଛେ ପଛେ ସେ ପାଣିକୁ ଡେଇଁପଡ଼ିଲା !

ବିରାଡ଼ିର ଲୋମସବୁ ଓଦା ହୋଇ ଜାକି ହୋଇଗଲା । ସେ ପହଁରା ଜାଣି ନ ଥିବାରୁ ଦୁଇ ତିନି ଢୋକ ପାଣି ବି ପିଇଦେଲା । ଧଳା ଲୋମରେ ଗୋଳିଆ ପାଣି ଲାଗି ମଇଳା ଦିଶିଲା । ବହୁକଷ୍ଟରେ ଆରକୂଳକୁ ଉଠି ଲାଜରା ହୋଇ ଚାଲିଗଲା ।

ବିରାଡ଼ି ତାର ଫୁଟାଣି ଦେଖାଇବାକୁ ସେଦିନ ଠାରୁ ଆଉ ପୋଖରୀ କୂଳକୁ ଆସିନାହିଁ । ଲାଜରା ହୋଇ ସେ ଚୁଲି ମୁଣ୍ଡରେ ରହିଲା ।



# କାଉର ଋଣ ସୁଝା

ଥରେ ପେଚାକୁ ଭାରି ଜ୍ୱର ହେଲା । ସେ ଉଠିବସି ପାରିଲା ନାହିଁ । ତାର ଭାରିଯା ମୂଷା ମାରି ଆଣିଦେଲା । ସେ କିଛି ଖାଇଲା ନାହିଁ । ସେ ନିଜ କୋରଡ଼ କୋଣରେ ପଡ଼ିଥାଏ । ସେଇ ଗଛ ଡାଳରେ ଗୋଟିଏ କୁଆ ତା' ପିଲା ଛୁଆଙ୍କୁ ଧରି ବସା ବାନ୍ଧିଥିଲା । ଏକା ଗଛରେ



ଥିବାରୁ ପେଚା ସହିତ ତାର ଭାରି ଭାବ । ପେଚାର ଭାରିଯା ଦେଖିଲା —ଔଷଧ ନ ଖାଇଲେ ପେଚା ମରିଯିବ । ସେ କୁଆ ବସାକୁ ଯାଇ କହିଲା—ଦିଅର, ତମ ଭାଇଙ୍କୁ ବାରଦିନ ହେଲା ଜ୍ୱର । ସେ ଖାଇ ନାହାନ୍ତି । ତୁମେ ଜଣେ ଡାକ୍ତର ଡାକ । ଔଷଧ ନ ଖାଇଲେ ସେ ଭଲ ହେବେ ନାହିଁ ।

କୁଆ ବଡ଼ ଅଡୁଆରେ ପଡ଼ିଲା । ସେ ବଣରେ ଏକା କୋଇଲି ଡାକ୍ତରୀ କରେ । ଥରେ ପେଚାର ନାଳ ଝାଡ଼ା ହୋଇଥିଲା । କୋଇଲି ତାକୁ ଔଷଧଦେଇ ଭଲ କରିଥିଲା । ପେଚା ଔଷଧ ଦାମ୍ କିମ୍ବା ଫିସ୍ କିଛି ଦେଇନି । ସେଥିପାଇଁ କୋଇଲି ଥରେ ପେଚାକୁ ମାଡ଼ ଦେଇଥିଲା । ଏବେ ପୁଣି ଡାକିଲେ କୋଇଲି ଆସିବ ନାହିଁ । ତେବେ ସେ କ'ଣ କରିବ ? ସେ ପେଚା ଭାରିଯାକୁ କହିଲା—ତୁମେ ଯାଅ ନୂଆବୋଉ, ମୁଁ ଯାହାହେଲେ କରିବି ।

କାଉ ଉଡ଼ିଯାଇ କୋଇଲି ବସାରେ ପହଞ୍ଚିଲା । କାଉ ପେଚାର ରୋଗକଥା କହିଲା । ଶୁଣୁ ଶୁଣୁ ସେ ସଫା ମନା କରିଦେଲା ଆଉ ରାଗରେ କହିଲା—ତୁମେ କ'ଣ ଜାଣିନ, ଆରଥର ତାକୁ ଭଲ କରିଥିଲି ଯେ ଗୋଟିଏ ପଇସା ମଧ୍ୟ ଦେଲାନି । ଔଷଧ ଦାମ୍ ହାତରୁ ପଡ଼ିଲା । ଫିସ୍ କଥା ପଚାରେ କିଏ ? ସେ ମଲେ ମରୁ ପଛେ, ମୁଁ ତା ଦୁଆରକୁ ଜମା ଯିବିନି ।

କାଉ ବହୁତ କାକୁତି ମିନତି କରି କହିଲା—ସେ ନ ଦେଲେ ମୁଁ ଦେବି । ତୁମେ ଆସ । ତାକୁ ଭଲ କର ।

କାଉ କଥାରେ ରାଜି ହୋଇ କୋଇଲି ଆସିଲା । ପେଚାକୁ ଔଷଧ ଦେଲା । ସେ ଭଲ ହୋଇଗଲା । ପେଚାକୁ ଟଙ୍କା କଥା କହିବାରୁ ଆଜି ଦେବି, କାଲି ଦେବି କହି ଦେଲାନି । ଦିନେ କାଉ ନଥିଲାବେଳେ ସେ ସେଇ କୋରଡ଼ ଛାଡ଼ି ଆଉ ଗୋଟିଏ କୋରଡ଼କୁ ପଳାଇଗଲା ।

କୋଇଲି ଥରକୁ ଥର କାଉକୁ ଟଙ୍କା ମାଗିଲା । କାଉ କୋଇଲିର କାମ କରିଦେଇ ତାର ଔଷଧ ଟଙ୍କା ସୁଝିବାକୁ ରାଜି

ହେଲା । କୋଇଲି ସେଥିପାଇଁ ତା ଡିମ୍ବତକ କାଉ ବସାରେ ରଖି ଦେଇଥାଏ । କାଉ ତାକୁ ଉଷୁମାଇଁ ଛୁଆ ଫୁଟାଏ । କାଉ ମନେ ମନେ ପେଚାକୁ ଖୋଜୁଥାଏ ।

ଦିନେ ଦି ପହରେ ପେଚା ଧରା ପଡ଼ିଗଲା । କାଉ ରାଗି ଯାଇ ଆଚ୍ଛା କରି ତାକୁ ପିଟିଲା । ପେଚା ଖଣ୍ଡିଆ ଖାବରା ହୋଇଗଲା । ସେ ଆଉ ଉଠିପାରିଲା ନାହିଁ । ତା' ଭାରିଯା ଆସି ତାକୁ ଉଠାଇକରି ନେଲା ।

ସମସ୍ତେ ଏ ମାଡ଼ କଥା ଶୁଣିଲେ । ସେହି ଦିନଠାରୁ ପେଚା ଲାଜରେ ଆଉ ଦିନବେଳା ବାହାରକୁ ବାହାରେ ନାହିଁ । ରାତି ହେଲେ ବସାରୁ ବାହାରେ । ଆହାର ତାର ଖୋଜିଖାଏ । ଦିନବେଳେ କେବେ ପେଚା କାଉ ହାବୁଡ଼େ ପଡ଼ିଗଲେ କାଉ ଭଲକରି ଖୁମ୍ପି ମଲାଗଲା କରିଦିଏ ।

ତେବେ ସେହି ଦିନଠାରୁ କାଉ କୋଇଲିର ଡିମ୍ବ ଫୁଟାଇ ତାର ଋଣ ସୁଝିଥାଏ । ପେଚା କାଉକୁ ଲୁଚି ଦିନବେଳା ବସାରୁ ବାହାରେ ନାହିଁ ।



# ଗଞ୍ଜାର ଗଞ୍ଜଣା

ଗୋଟିଏ ଗଞ୍ଜା ରାତି ନ ପାହୁଣୁ ଉଠିଲା । ସେ ଥରେ ଦୁଇ ଥର ବୋବାଇଲା । ସେତେବେଳକୁ ଆଉ କେହି କୁକୁଡ଼ା ଉଠି ନଥିଲେ । ସେ ଘରୁ ବାହାରି ଯାଇ ଗୋଟିଏ ପାଣି ଖାଲ ପାଖରେ ବସିଲା । କେତେ ସମୟ ପରେ ସେ ଆଡ଼କୁ କେହି ଜଣେ ଚୁପ୍ ଚୁପ୍ ଆସିଲା ପରି ତାକୁ ଲାଗିଲା । ସେ ଉଡ଼ିଯାଇ ଗୋଟିଏ ଗଛର ଡାଳରେ ବସିଲା । ଏଇ ସମୟରେ ସେ କାହାକୁ ପାଣିରେ ଛାଟିପିଟି ହେବାର ଶୁଣିଲା ।

ସେ ଦେଖିଲା ବେଳକୁ କୋକି ପାଣିରେ ପଡ଼ି ଛଟପଟ ହେଉଛି ଆଉ ଖାଲରୁ ଉପରକୁ ଉଠିବାପାଇଁ ଗୋଡ଼ ବାଡ଼େଇ ଲାଗିଛି । ସେ ହସି ହସି କହିଲା—କିଓ, ମୋତେ ଖୋଜିବାକୁ ଆସିଥିଲ ପରା ? ବେଶ୍ ଗାଧୁଆଟାଏ ହୋଇଗଲା ତ ?

କୋକି ସତରେ କୁକୁଡ଼ାକୁ ମାରିବ ବୋଲି ଆସିଥିଲା । ମାରି ତ ହେଲାନି । ଓଲଟି ଗୋଡ଼ ଖସିଯିବାରୁ ସେ ପାଣି ଖାଲରେ ପଡ଼ି ଗୋଟାଏ ଶିଙ୍ଗିବୁଡ଼ା ପାଇଲା । କୋକି ଭାରି ଚଲାକ ଜନ୍ତୁ । ସେ ଅସଲ କଥା ଲୁଚାଇ କହିଲା—ଗଞ୍ଜା କିରେ ? କ'ଣ ଆଜି ଏତେ ସକାଳୁ ଉଠିଲୁଣି ?

ଗଞ୍ଜା ଉତ୍ତର ଦେଲା—ହଁ, ଆଜି ଟିକିଏ ସହଳ ଉଠିଛି । ନୋହିଲେ ତୋର ଏ ଶିଙ୍ଗିବୁଡ଼ା ଦେଖନ୍ତି କିମିତି ?

କୋକି କହିଲା—ହେଉ, ହେଉ । ଆଜିକାଲି ଦୁନିଆ ବଦଳି ଗଲାଣି । କିଏ କାହା କଥା ପରତେ ଯାଉଛି ? ନୋହିଲେ ତୁ ପୁଣି ମୋତେ ଏମିତି କହନ୍ତୁ ? ଆରେ ତୋତେ ମୁଁ ମୋଟେ ଦେଖିନି । ମୁଁ ସବୁଦିନ ଏଠିକି ଗାଧୋଇବାକୁ ଆସେ, ଆଜି ଆସିଥିଲି । ଏଠି ତୋତେ ଆଗରୁ କେବେ ଦେଖିନି । ଆଜି ଦେଖିବାରୁ ତୋତେ ଦି' କଥା ପଚାରିଲି ।

ସେ ପାଣି ଖାଲରୁ ଉଠି ଝାଡ଼ିଝୁଡ଼ି ହେଲା । ଗଞ୍ଜା ତା କଥାରେ ହସୁଥାଏ । ସେ ପୁଣି ଗଞ୍ଜାକୁ କହିଲା—ଦେଖ, ସେଠି ସେ ହାଣ୍ଡିରେ କିଛି ଧାନ ଅଛି । ମୁଁ ସକାଳୁ କିଛି ଖାଇନି । ସେଥିରୁ ଦି'ଟା ଖାଏ । ତୁ କିଛି କହିବୁ ନାହିଁ ତ ?



ଗଞ୍ଜା ହସି ଦେଇ କହିଲା—ହେ, ତୁ ମୋତେ କ'ଣ ଏତେ ବୋକା ପାଇଲୁ ? ତୁ ପୁଣି ଖାଇବୁ ଧାନ ? ତେବେ କୁକୁଡ଼ା ଚୋରୀ କରିବ କିଏ ? ତୁ ମୋତେ ଖାଇବାକୁ ଆସିଥିଲୁ । ଏଇନେ ଧରା ପଡ଼ିଯିବାରୁ ଏ ଚାଲାକି କରୁଚୁ ?

କୋକି କହିଲା–ପୁଣି ସେଇ କଥା ? ଯେତେ କହିଲେ ତୁ ବୁଝିଲୁ ନାହିଁ । ମୁଁ ତୋତେ ମୋଟେ ଦେଖି ନଥିଲି । ତୁ କ'ଣ ଶୁଣିନୁ କାଲି ପରା ଠିକ୍ ହେଲା ଏଣିକି କେହି ମାଂସ ଖାଇବେ ନାହିଁ !

ଗଞ୍ଜା ପଚାରିଲା–ତେବେ କ'ଣ ଆମ କୁକୁର ବି ମାଂସ ଛାଡ଼ି ଦେବ ?

କୋକି କହିଲା–ନିଶ୍ଚୟ ! ମାଂସ ତ ମାଂସ, ସେ ହାଡ଼ ବି ଛୁଇଁବ ନାହିଁ ! ତୁ ମୋ ପାଖକୁ ଆ ! ସାଙ୍ଗହୋଇ ଧାନ ଖାଇବା ।

ଗଞ୍ଜା କହିଲା– ତେବେ ଆମ କୁକୁରକୁ ମୁଁ ଖବର ଦିଏ । ସେ ଆସୁ । ସମସ୍ତେ ସାଙ୍ଗ ହୋଇ ଧାନ ଖାଇବା ।

ଗଞ୍ଜା ଖୁବ୍ ଜୋରରେ ରାବି ଉଠିଲା । କୋକି ତରତର ହୋଇ କହିଲା – ହେ, ରହ–ରହ । ଏମିତି ବୋବାଉଛୁ କାହିଁକି ? ତାକୁ ପରେ ଖବର ଦେଲେ ଚଳିବ ।

ଗଞ୍ଜା ତା' କଥା ଶୁଣି ଖୁବ୍ ବଡ଼ ପାଟିରେ ବୋବାଇଲା । ତା' ଡାକ ଶୁଣି କୁକୁରର ନିଦ ଭାଙ୍ଗିଗଲା । ସେ କୋକି ଗନ୍ଧ ପାଇ ଭୋ ଭୋ ଭୁକିଲା । କୁକୁର ଭୁକିବା ଶୁଣି କୋକି ବିଜୁଳି ବେଗରେ ପଳାଇଲା । ଗଞ୍ଜା ଡାକରେ ଆଉସବୁ କୁକୁଡ଼ା ସେଠାକୁ ଆସିଲେ । ସେ ଆନନ୍ଦରେ ସମସ୍ତଙ୍କୁ କୋକି ଗପ କହି ଖାଲି ନାଚିବାରେ ଲାଗିଗଲା । ସେତେବେଳକୁ କୋକି ତା କୋରଡ଼ରେ ନିଃଶ୍ୱାସ ମାରୁଛି ଆଉ ଗଞ୍ଜାର ଗଞ୍ଜଣା କଥା ଭାବି ମନ ଦୁଃଖ କରୁଛି ।



